**ଅଂଶୁପାର ପକ୍ଷୀ (କବିତା ସଂକଳନ)**
ନକୁଳ ଚନ୍ଦ୍ର ସାହୁ

ଗୋଡ଼ିସାହି, କଟକ- ୭୫୪୦୦୬
ଫୋନ୍ : ୯୪୩୭୭୪୦୨୬୪

ପ୍ରକାଶକ
ବିନ୍ଦୁ କ୍ରିଏଟିଭ
ଜାଗମରା, ଖଣ୍ଡଗିରି, ଭୁବନେଶ୍ୱର
ଫୋନ୍: ୭୦୦୮୫୭୫୯୮୫

ପ୍ରଚ୍ଛଦ: ଶିବ ପ୍ରସାଦ ପାତ୍ର

ପ୍ରଥମ ସଂସ୍କରଣ : ୨୦୨୦, ଜୁଲାଇ ୧୯

ମୂଲ୍ୟ: ₹୫୦.୦୦

**Ansupara Pakshi**
by: Nakula Chandra Sahoo
Godisahi, Cuttack - 754006, Ph: 9437740264


Publisher: Bindu Creative
Jagmara, Khandagiri, Bhubaneswar
Phone : 7008575985
Email: binducreative12@gmail.com

Cover: Siva Prasad Patra

1st Edition: 2020

Price: ₹50.00



# କାବ୍ୟିକ ବୟାନ

ପକ୍ଷୀ ସଂସ୍କୃତିର ଦେଶ ଭାରତ । ଭାରତର ପ୍ରାଚୀନତମ ସାହିତ୍ୟ ଉପନିଷଦରେ ବର୍ଣ୍ଣିତ ଦେହ ବୃକ୍ଷକୁ ଆଶ୍ରୟ କରିଅଛନ୍ତି 'ଦ୍ୱା ସୁପର୍ଣ୍ଣା' ଦୁଇଟି ପକ୍ଷୀ ନୁହେଁ ! ଦୁହେଁ 'ସଯୁଜା ସଖାୟା', ଏକାଠି ରହୁଥିବା ଦୁଇ ବନ୍ଧୁ (ଶ୍ୱେତାଶ୍ୱତରୋପନିଷଦ୍, ୪ର୍ଥ ଅଧ୍ୟାୟ) ! ଛାଂଦୋଗ୍ୟ ଉପନିଷଦରେ ଶିଷ୍ୟ ସତ୍ୟ କାମକୁ ଗୋଟିଏ ହଂସ ବ୍ରହ୍ମଙ୍କ ତୃତୀୟ ପାଦରେ କରିଛି ଉପଦେଶ ! ଶ୍ରୀମଦ ଭାଗବତ ମହାପୁରାଣ ଏକାଦଶ ସ୍କନ୍ଧରେ ଆସିଛି ଗୋଟିଏ ହଂସାବତାର ଚିତ୍ର ! ହଂସ ସନକାଦି ଋଷିଙ୍କୁ ଅବଗତ କରାଇଛନ୍ତି ଯୋଗ ପରାକାଷ୍ଠା ! ମହାଭାରତ ଶାନ୍ତି ପର୍ବରେ ହଂସ ରୂପଧାରୀ ଭଗବାନ ଅଣଚାଶଟି ଶ୍ଳୋକରେ ମୋକ୍ଷ ଧର୍ମର ତତ୍ତ୍ୱ କରିଛନ୍ତି ବୟାନ ! ରାମାୟଣ ରଚନାର ଇନ୍ସପିରେସନ୍ ଗୋଟିଏ କ୍ରୌଂଚୀର ହୃଦୟ ବିଦୀର୍ଣ୍ଣ କାରୁଣ୍ୟ ; ଜଗତ ପ୍ରସିଦ୍ଧ ! ପ୍ରାଚୀନ ଭାରତୀୟ ଗଦ୍ୟ ସାହିତ୍ୟ ; ପଶୁପକ୍ଷୀଙ୍କ କଥାରେ ସମୃଦ୍ଧ ଆମ 'ପଞ୍ଚତନ୍ତ୍ର' !

କୋଟି କୋଟି ହିନ୍ଦୁ ସଂସ୍କୃତିରେ ଆରାଧ୍ୟ ପ୍ରଧାନ ଦେବ ଭଗବାନ ଶ୍ରୀବିଷ୍ଣୁଙ୍କ ବାହାନ ଗରୁଡ଼ ପକ୍ଷୀ ! ଧନଦାତ୍ରୀ ମହାଲକ୍ଷ୍ମୀ ଦେବୀଙ୍କ ବାହାକ ପେଚକ ପକ୍ଷୀ ! ବିଦ୍ୟାଦାତ୍ରୀ ଶ୍ୱେତ ମରାଳ ଆରୋହଣ କରନ୍ତି ! ଦେବ ସେନାପତିଙ୍କ ବାହାନ ମୟୂର ! ଶନିଦେବଙ୍କ ବାହାନ କାକ ! ରୁଚି ସମ୍ପନ୍ନ ପରିବାର ଗୃହରେ ଶୁକ ଓ ଶାରୀ ପାଳନ କରନ୍ତି ! ଗୃହରେ ବାସ କରିଥିବା ପାରା ଏକ ସୂଚକ ପକ୍ଷୀ ! ସମକାଳ ସଂସ୍କୃତିରେ କୁକ୍କୁଟ ପାକଶାଳାର ପରିବା କାର୍ଯ୍ୟ ନିର୍ବାହ କରୁଛି !

ସାରସ୍ୱତ କଳା ସର୍ଜନାରେ ଆତ୍ମପକ୍ଷୀ, ଆଖିର ପକ୍ଷୀ, ପ୍ରେମ ପକ୍ଷୀ, ମନପକ୍ଷୀ ଇତ୍ୟାଦି ଅସଂଖ୍ୟ ପକ୍ଷୀ ବ୍ୟବହାର ରଚନାକୁ ରୁଚିର କରିଛି । ପ୍ରତୀକ ବ୍ୟବହାରରେ ଦେଖାଯାଏ ପ୍ରେମିକା ବି ଗୋଟିଏ ପକ୍ଷୀ । ଆମ ଦୈନନ୍ଦିନ ସାମାଜିକ ଜୀବନରେ ପକ୍ଷୀ ସଂସ୍କୃତିର ପ୍ରଭାବ ପ୍ରାଧାନ୍ୟ ପୂର୍ଣ୍ଣ ଓ ଉଜ୍ଜ୍ୱଳ ।

ରୂପସୀ ଅଂଶୁପା ପକ୍ଷୀଙ୍କ ମା' !

ଚଳିତବର୍ଷ ପ୍ରକାଶିତ 'ବାର୍ଡ଼ସ୍ ଅଫ୍ ଅଂଶୁପା' ବହି ଖଣ୍ଡିକ ଯେତେବେଳେ ମୋ ଦୃଷ୍ଟିକୁ ଆସିଲା ଏକ ଅଚିହ୍ନା ପୁଲକର ଧାରା ମୋ ପ୍ରାଣ ଭିତରୁ ଫୁଟି ଉଛୁଳି ପଡ଼ିଲା ! ପକ୍ଷୀ ; ଏମାନେ ଅଂଶୁପାର ନୁହଁନ୍ତି, ମୋ ନିଜ ପ୍ରାଣ ଉପବନ କୁଞ୍ଜର ସଙ୍ଗୀତ ଶିଳ୍ପୀ !!

ମୁଁ ଅନେକ ଥର ଅଂଶୁପା ଯାଇଛି ! ଢୁ ଢୁ ବର୍ଷା, ତାଓାରେ ରୁଟି ସେକି ହୋଇଯିବା ଭଳି ଖରା, ମଣ୍ଡା ଫୁଲ ପରି ସୁନ୍ଦର ଶୀତ ଓ ବସନ୍ତ ଋତୁର ଫୁଲଶେଯପରେ ମୁଁ ଅଂଶୁପାକୁ ପାଇଛି ! ସେହି ପକ୍ଷୀମାନଙ୍କୁ ହୃଦୟ ଦେଇ ଦେଖିଚି ଏବଂ ଶୁଣିଛି ! ଶୁଣିଛି ସେମାନଙ୍କ ଅସ୍ତିତ୍ୱର ନୀରବତା !

'ନୈଷଧ'ରେ ଶ୍ରୀହର୍ଷ ଲେଖିଛନ୍ତି, ବ୍ରହ୍ମାଙ୍କ ବାହାନ ଗୋଟିଏ ସୁବର୍ଣ୍ଣ ହଂସ ଦ୍ୱାରା ନାୟକ ନରେଶ ପୁଣ୍ୟଶ୍ଳୋକ ନଳ ତାଙ୍କ ମାନସୀ ତଥା ନାୟିକାକୁ ଭେଟିବା ପରି ପକ୍ଷୀମାନଙ୍କ ଦ୍ୱାରା ମୁଁ ଅଂଶୁପାକୁ ଭେଟିଛି ଓ ପାଇଛି ! ପାଇଛି ରୂପସୀର ଆତ୍ମମଧୁ ! ଥରକୁ ଥର ପୁଲକ କୁଞ୍ଜରେ ହୋଇଛି ଏକାତ୍ମ !

ପକ୍ଷୀ ଯେମିତି କେଳୀ କୁଞ୍ଜର ସଖୀ ! ସେମାନଙ୍କୁ ଯେମିତି ମୋ କବି ଚେତନା ଅନୁଭବ କରିଛି ସେମିତି ବର୍ଣ୍ଣର ବର୍ଣ୍ଣାଳୀରେ ମୁଁ ଐଶ୍ୱର୍ଯ୍ୟମୟ କରି ରଖିଛି ! କବିତା କବିଙ୍କ ଅନୁଭୂତି ଓ ଅଭୀପ୍ସାର ନୀଳପଦ୍ମ ! ଏକ ସମୟହୀନ ଜଗତ ଭିତରେ ମୋ କବିତା ହୋଇଛି ସାମ୍ପ୍ରତିକ ! କବିତା ଅ-ଗଦ୍ୟ, ନୁହେଁ ପଦ୍ୟ ! କବିତା ଶବ୍‌ଦ ସର୍ବସ୍ୱ ଏକ ନୀଳ ଠାର ! ଶବଦ ବସାଣ ଦ୍ୱାରା ସୁସମ୍ପନ୍ନ !

ମୋ କବିତା ରେକର୍ଡ଼ ଅଫ୍ ଦି ବେଷ୍ଟ ଏଣ୍ଡ ବିୟୁଟିଫୁଲ ମାଇଁଣ୍ଡ ! ମୋ ଅଭିବ୍ୟକ୍ତି ଶକ୍ତ ଓ ଛନ୍ଦ (ୱାର୍ଡ଼ ମୁଭ୍‌ମେଣ୍ଟ) ଶ୍ରୀ ସମ୍ପନ୍ନ । ସ୍ୱଚ୍ଛ ଓ ସ୍ୱତଃସ୍ଫୂର୍ତ୍ତ ସୁଷମା ପ୍ରଦର୍ଶନ ମୋ କବିତାର ଆଭିମୁଖ୍ୟ ! ବୋଧେ ଏହା ହିଁ ମୋ କାବ୍ୟିକ ପୂର୍ଣ୍ଣତାର ମୂଲ୍ୟ, ମୁଁ ଲାଭ କରିଛି !

ମୋର ଏଇ ଚାରୁଚର୍ଯ୍ୟାର ନେପଥ୍ୟରେ ଅଛନ୍ତି ଜଣେ ପ୍ରିୟ ନାୟକ ! ଉକ୍ରଳ ମାଟିର ଏକ ଶ୍ରେଷ୍ଠ ପ୍ରତିଭା, ଭାଷା ମା'ର ଅଦୃଶ୍ୟ ମୁକୁଟ ମଣ୍ଡିତ ପୁତ୍ର, ଜଣେ ମହାନ୍ ବ୍ୟକ୍ତିତ୍ୱ, ସିଏ ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ । ୨୦୧୮ ମସିହା, ବିଶ୍ୱ ଆର୍ଦ୍ରଭୂମି ଦିବସ, ଏସିଆର ବୃହତ୍ ମଧୁର ଜଳ ଆର୍ଦ୍ର ଭୂମି ଅଂଶୁପା କୂଳରେ ଗୋଟିଏ କବି ସମ୍ମେଳନ ଓ କବିତା ପାଠୋତ୍ସବ ସେ କରାନ୍ତି । କବି ଓ କବୟିତ୍ରୀମାନଙ୍କୁ ସମ୍ମାନ ପତ୍ର ଓ ଉପଢୌକନ ସହିତ କରାନ୍ତି ସମ୍ବର୍ଦ୍ଧିତ । କବିବର ରାଧାନାଥଙ୍କ ପ୍ରସିଦ୍ଧ ଖେଦୋକ୍ତି, 'ଚିଲିକା ଅଂଶୁପା ଲୋକେ ଅଗୋଚର' ପଂକ୍ତିକୁ ଲିଭାଇ ଦେବାକୁ ଗଢ଼ି ଉଠେ ଏକ ଜାତୀୟବାଦୀ ସାରସ୍ୱତ ଆନ୍ଦୋଳନ । 'ଅଂଶୁପା' ଶୀର୍ଷକ ଓଡ଼ିଆ ସାହିତ୍ୟର ଏକ ଐତିହାସିକ ରଚନା ସଂଗ୍ରହ ଚିଲିକା ଉନ୍ନୟନ ନିଗମ ଦ୍ୱାରା ହୁଏ ପ୍ରକାଶିତ ।

ଏହି ଆନ୍ଦୋଳନର ଅଂଶ ବୈଦେଶ୍ୱରର ପ୍ରସିଦ୍ଧ ପ୍ରବଚକ କୃଷ୍ଣ କେଶବ ଷଡ଼ଙ୍ଗୀଙ୍କ 'ଅଂଶୁପା' ବହୁଳ ସଂସ୍କୃତ ଶବ୍‌ଦ ବିଳାସ କାବ୍ୟ ଆସିଛି ଲୋକ ଲୋଚନକୁ । ବଡ଼ମ୍ବାର ସୂର୍ଯ୍ୟ ନାରାୟଣ ମିଶ୍ର ଭଞ୍ଜୀୟ ଶୈଳୀରେ ପ୍ରକାଶ କରିଛନ୍ତି 'ଅଂଶୁପା'। ବାଙ୍କୀର କାବ୍ୟ ସାରଥି ପବନି ଜେନା ଓ କବି ଭୀମସେନ ନାୟକ ରଚନା କରିଛନ୍ତି ତାଙ୍କ କଳ୍ପନା, 'ଅଂଶୁପା'!

ଆଠଗଡ଼ ସବ୍‌ଡିଭିଜନର କେହି କେହି କବି ରଚନାରେ ବ୍ରତୀ ଅଛନ୍ତି, ଏହା କବି କୈଶିକ ନାୟକ ମତେ ସୂଚିତ କରିଛନ୍ତି । ତାଙ୍କୁ ମୋ ଅଂଶୁପାର ଆଞ୍ଜୁଳାଏ ନୀଳ କଇଁ ଓ ଭଲପାଇବାର ପଟେ ମିଠା ଜହ୍ନ ।

ଏହି ଅଂଶୁପା ସାରସ୍ୱତ ଆନ୍ଦୋଳନର ଅଂଶବିଶେଷ 'ଅଂଶୁପାର ପକ୍ଷୀ' ! ଅବଶ୍ୟ ପରିବେଶ ବିଜ୍ଞାନ ଆଧାରିତ ଇଂରାଜୀରେ ଲିଖିତ ଖଣ୍ଡିଏ ଉଚ୍ଚମାନର ପୁସ୍ତକ 'ବାର୍ଡ଼ସ୍ ଅଫ ଅଂଶୁପା' ସର୍ବଶ୍ରୀ ସୁଶାନ୍ତ ନନ୍ଦ, ଡ. ସମ୍ରାଟ ଗୌଡ଼ା, ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ ଏବଂ ତୁହିନାଂଶୁ କରଙ୍କ ଦ୍ୱାରା ରଚିତ ଓ ସମ୍ପାଦିତ । ଏହି ପୁସ୍ତକର ପକ୍ଷୀଗୁଡ଼ିକଙ୍କ ଜୀବନ୍ତ ଛବି ମୋ କଳ୍ପନାକୁ ଯୋଗାଇଛନ୍ତି ସମୀଧ । ଆନ୍ତର୍ଜାତିକ ମାନର ଏହି ବହି ଅଂଶୁପା ପରି ଓଡ଼ିଶାର ଅମୂଲ୍ୟ ସମ୍ପଦ ।

ମୁଁ ଲେଖିଚି ଆଧୁନିକ କବିତା ! ସମକାଳୀନ ସ୍ୱର ମୋ ଶୈଳୀ ସମ୍ପନ୍ନ ଓ ଧାରା ସମ୍ପଦ ! ମୋ କବିତା ଏକ Amalgam ! ଯେଉଁ ଧାରାରେ ପାଉଣ୍ଡ, ଇଲିୟଟ, ଅଡ଼େନ୍, ଇଏଟସ୍, ଡାଇଲାନ୍ ଥୋମାସ, ଫିଲିପ ଲାର୍କିନ୍ ଓ ଟେଡ୍ ହ୍ୟୁସ୍ ପ୍ରଭୃତି ରଚନା କରି କଳାକୁ କରିଛନ୍ତି ସମକାଳୀନ ଓ ଶ୍ରେଷ୍ଠ ।

ପ୍ରକୃତି କବି ୱ ୱାର୍ଡସ୍‌ୱାର୍ଥ ତାଙ୍କ 'ଲିରିକ୍‌କାଲ୍ ବାଲାଡସ୍' 'ପ୍ରିଫେସ୍'ରେ ଦାବୀ କରିଛନ୍ତି, କବିତା ବ୍ରହ୍ମାଣ୍ଡ ସୌନ୍ଦର୍ଯ୍ୟର ସ୍ୱୀକୃତି । ମାନବାତ୍ମା ଓ ବ୍ରହ୍ମାଣ୍ଡାତ୍ମାର ସୌନ୍ଦର୍ଯ୍ୟକୁ କବି କବିତାରେ ବୁଣିଥାନ୍ତି ! କବିତା ରଚନା ଶୈଳୀ ସାଧାରଣତଃ ତିନି ପ୍ରକାର । ପୂର୍ବାଧୁନିକ, ଆଧୁନିକ ଓ ଉତ୍ତର ଆଧୁନିକ । ଆଧୁନିକ ଓ ଉତ୍ତର ଆଧୁନିକ ସମିଶ୍ରିତ ଶିଳ୍ପ ସୃଷ୍ଟି ଦ୍ୱାରା ମୋ ଶବଦ ବସାଣ ସଂଘଟିତ । କାବ୍ୟିକ ସଂସ୍କୃତି ଅନୁସାରେ ଗଠିତ ଏକ ଆଧୁନିକ କାବ୍ୟିକ 'Feeling', ଯାହାକୁ କବିତାର ଅର୍ଥ ନିର୍ଣ୍ଣୟ କଳାରେ ଆଇ. ଏ. ରିଚାର୍ଡସ୍ ନାମିତ କରିଛନ୍ତି !

ମୋ କବିତା ମୋ ଆର୍ଟ !
ମୋ ଆର୍ଟ ଗୋଟିଏ ସୌନ୍ଦର୍ଯ୍ୟ ଅଭୀପ୍ସାର ଆତ୍ମଚିତ୍ର !
ମହାକବି ଭବଭୂତିଙ୍କ ପରି 'କୋଽପି ସମଧର୍ମା'ଙ୍କ ପାଇଁ ଏହା ମୁଁ ଲେଖିନାହିଁ !
ନିରବଧି ପ୍ରବାହିତ କାଳର ଏହା ଏକ ଉତ୍ପାଦନ ।

.... ସେହି କାଳଙ୍କ ହସ୍ତରେ ଏହାକୁ କରୁଛି ସମର୍ପଣ ! ମୁଖବନ୍ଧ ଦ୍ୱାରା ଏହି ବହିକୁ ଶ୍ରୀ ସମ୍ପନ୍ନ କରିଥିବା ସ୍ୱର୍ଦ୍ଧିତ ପ୍ରାବନ୍ଧିକ ଡ. ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କଠାରେ ମୁଁ ବହୁତ ବହୁତ କୃତଜ୍ଞ । ଶେଷକୁ ଏହାର ପୁସ୍ତକ ଶିଳ୍ପୀକୁ ମୋ ସାଧୁବାଦ ।

**ନକୁଳ ଚନ୍ଦ୍ର ସାହୁ**





# ।। ଚିରନ୍ତନ ସାହିତ୍ୟର ଫର୍ଦ୍ଦେ ବର୍ଣ୍ଣମାଳା : ନକୁଳ ଚନ୍ଦ୍ର ସାହୁଙ୍କ କାବ୍ୟକଳା ।।

- ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

ଓଡ଼ିଆ ବାଙ୍ମୟରେ ବାକ୍‌ମୟୀ ଏକ ଲେଲିହାନ ସୂର୍ଯ୍ୟ । ଏହା ଶବ୍ଦର ଅବତାର ଏବଂ ମୁହୂର୍ତ୍ତର ମୂର୍ତ୍ତି । ସେ ମୁହୂର୍ତ୍ତ ମଣିଷ ଭୋଗୁଥିବା ମୁହୂର୍ତ୍ତ କବି ବଂଚୁଥିବା ସମୟର । 'ବାକ୍‌ମୟୀ' ଓଡ଼ିଆ ସାରସ୍ୱତ ପୁରୁଷ ନକୁଳ ଚନ୍ଦ୍ର ସାହୁଙ୍କ  ତୃତୀୟ କବିତା ସଂକଳନ । ଏଥିରେ ଅର୍ନ୍ତଭୁକ୍ତ ପ୍ରତିଟି କବିତା ନିଜର ଅନନ୍ୟ ସମ୍ମୋହନ ଭୋଗୁଥିବା ସମୟର ନିର୍ମୋହ ନିର୍ମୋକ ଉନ୍ମୋଚନ । କବିଙ୍କ ପ୍ରାରମ୍ଭ ଉଚ୍ଚାରଣ -

"ପ୍ରତ୍ୟେକ ଥର ଦେହର ପ୍ରକୋଷ୍ଠରୁ ବାହାରି  
ମୁଁ ଚାଲି ଆସୁଛି ମଳୟର ବଗିଚାକୁ  
ଧୈର୍ଯ୍ୟର ସହିତ ମୁଁ ଉନ୍ମୋଚିତ କରୁଚି  
ଉନ୍ନୀତ ପରିବେଶର ଜଡ଼ଜୀବନକୁ  
ତମେ ଋତ ସଂଜାତ କିଂଶୁକ ବର୍ଣ୍ଣର ହଂସ  
ନିଷ୍କଳୁଷ ବିସ୍ମୟ ଓ ଅରୁଣ ରଂଗର ବାକ୍  
ପ୍ରକୃତିର ବନ୍ଦୀଶାଳାରୁ ମୁକୁଳି ଆସିଥିବା ଉଷା  
ସୃଷ୍ଟିର ତମେ ପ୍ରଥମ ଆଲୋକ, ଅମୃତର ଶେଷପର୍ବ"। (ଦିଗ୍‌ବଧୂ-ପୃ-୧୫)

ଏହି ଉଦାତ୍ତ ଉଦ୍‌ଘୋଷଣା ସହିତ ପ୍ରକୃତିର ବନ୍ଦୀଶାଳାରୁ ମୁକୁଳିତ ପକ୍ଷୀର କାକଳୀ ପରି ଝରିପଡେ କବିତାର କଥା । କବି ଋତମ୍ଭର ଅମୃତର ଉପାସକ; ଅନ୍ଧାର ଭିତରେ ଅରୁଣ ରଂଗର ଉଷା ।

ନିଷ୍ଠାପର କବି ଋତ ଶବ୍ଦକର୍ମୀ ନକୁଳ ଚନ୍ଦ୍ରଙ୍କର ପ୍ରଥମ କବିତା ସଂକଳନ 'ଏବଂ ପୁନରପି' (୧୯୮୦) ଏବଂ ଦ୍ୱିତୀୟ ସଂକଳନ 'କ୍ରୁଶସ୍ଥ ଋତୁ ଏବଂ ଗୋଟିଏ ମିନତି' (୧୯୮୧) ଗତ ଶତାବ୍ଦୀର ସପ୍ତମ ଦଶକର ଫଳପ୍ରସୂ । ପରେ ପରେ ଦୀର୍ଘ ଚାରି ଦଶକର ବ୍ୟବଧାନ ପରେ ଏହି ପୁଷ୍ପିତ ଅର୍ଘ୍ୟ 'ବାକ୍‌ମୟୀ' । ଏହି ଚାରି ଦଶକରେ କବି କଣ ନିରବ ଥିଲେ ? କବିତାର ନିମଜ୍ଜମାନତା ଭିତରେ ଆତ୍ମ ଅନ୍ୱେଷାର ସୂତ୍ର କଣ ଶିଥିଳ ହୋଇଯାଇଥିଲା? ତାଙ୍କର ବଞ୍ଚୁଥିବା ଜୀବନର ଉଚ୍ଚାରଣ କଣ କାବ୍ୟମୟ ଉପଲବ୍ଧିକୁ ଆନ୍ଦୋଳିତ କରୁନଥିଲା । ଆନ୍ଦୋଳିତ କରୁଥିଲା ଏଣୁ କବି ବୃହତ୍ତର ଜୀବନବୃକ୍ଷର ସଂଧାନରେ ଥିଲେ, ଦାର୍ଶନିକ ଅର୍ଥବୋଧକୁ ଶାଣିତ କରୁଥିଲେ ଏବଂ ଆଧାତ୍ମିକ ଓ ଅଲୌକିକ ପଥକୁ ଜାଗତିକ ଭୂମି ଭିତରୁ ପ୍ରଦକ୍ଷିଣ କରୁଥିଲେ ।



କେବଳ ସେତିକି ନୁହେଁ । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଅଜସ୍ର କବିତା ପ୍ରକାଶ ପାଇଥିଲା, ଚର୍ଚ୍ଚିତ ଓ ପ୍ରଶଂସିତ ହୋଇଥିଲା । ତୃତୀୟ କବିତା ସଂକଳନ ପ୍ରକାଶ ପାଇବା ଭିତରେ ଲୋକ ଲୋଚନକୁ ଆସିଥିଲା ଗୋଟିଏ ଗଳ୍ପ ସଂକଳନ ୬ଟି ଉପନ୍ୟାସ ଓ ୭ଟି ପ୍ରବନ୍ଧ ସଂକଳନ ।

## କବିତା ପ୍ରେମରେ ଫସିଛି : ଏବଂ ପୁନରପି

୧୯୮୦ ମାର୍ଚ୍ଚ ୧୯ ଦିନ କବି ନକୁଳ ଚନ୍ଦ୍ରଙ୍କ ପ୍ରଥମ କବିତା ସଂକଳନ "ଏବଂ ପୁନରପି" ପ୍ରକାଶ ପାଏ। ପୁସ୍ତକଟି "ଏବଂ ମିନାକରା ମୁହୂର୍ତ୍ତମାନଙ୍କୁ" ସମର୍ପି ଦିଅନ୍ତି କବି ଏବଂ ପ୍ରଥମ ପଂକ୍ତିରେ ଘୋଷଣା କରନ୍ତି - "ଆଉଥରେ / ଯଦି ମତେ ଦିଅ / ଜୀବନ ମଦିରା ପ୍ରଭୋ / ମତେକର ଗଛଟିଏ / ତମ ପୃଥିବୀର" ଅସ୍ତିତ୍ୱବାଦୀଙ୍କ ପରି ସେଦିନ ଏହି ଯୁବ କବି ଘୋଷଣା କରିଥିଲେ -

ମୁଁ ବଂଚିଛି ।
ମୋ ହାଡ଼ରେ ବଂଚିବାର
ନୂତନ ରାଗିଣୀ ।
ତମେ ମତେ ମାରି, ପାରିଲନି
ମୋ
କବର ଫଳକେ
ମୁଁ ପଢୁଚି
ନିଜ
ଏପିଟାଫ୍ (ଏପିଟାଫ୍ - ଏବଂ ପୁନରପି, ପୃ-୧)

'ଏବଂ ପୁନରପି' ସଂକଳନରେ ସଜଗୋଲାପ ପରି ୭୨ଟି କବିତା ସଂକଳିତ । ଦୁନିଆ ଭିତରେ ଥାଇ ବେଦୁନିଆ, ବାସ୍ତବ ଭିତରେ ଅବାସ୍ତବ । ପାଶ୍ଚାତ୍ୟ କାବ୍ୟ ପ୍ରଭାବରେ ପ୍ରଭାବିତ ପ୍ରଗତିଶୀଳ ଓ ସ୍ଥିତିବାଦୀ ଚେତନାର ଔଜଲ୍ୟରେ ରୁଦ୍ଧିମନ୍ତ ନକୁଳଚନ୍ଦ୍ରଙ୍କ ପ୍ରାରମ୍ଭିକ କାବ୍ୟଚର୍ଯ୍ୟା ଭୋଗବାଦର ବିଜ୍ଞାପନ ଭିତରେ ମଣିଷ ଜୀବନ ପଣ୍ୟ ସାମଗ୍ରୀରେ ରୂପାନ୍ତରିତ ହେବାର ଚିତ୍ର ଭିତରେ ଗଭୀର ଆଶାବାଦର ଝଲକ ତାଙ୍କ କବିତା । ବସ୍ତୁବାଦୀ ସଂସ୍କୃତିର ଚକ୍ର ବ୍ୟୁହରୁ ମୁକୁଳି ଜୀବନର ପରମ ଐଶ୍ୱର୍ଯ୍ୟକୁ ବିମୁଗ୍ଧ ବାଙ୍ମୟତାରେ ପ୍ରସ୍ଫୁଟିତ କରିବାର ସାମର୍ଥ୍ୟ 'ଏବଂ ପୁନରପି'ର ବ୍ୟଂଜିତ ବିହନ । ଏଣୁ ପୁସ୍ତକର ଜନ୍ମ ଜାତକ ପ୍ରସ୍ତୁତ ବେଳେ କବିବଂଧୁ ଗିରିଜା କୁମାର ବଳୀୟାରସିଂହ ଘୋଷଣା କରନ୍ତି - "ବଂଧୁ, ଆମେ ସବୁ ଏକ ଇଷତ୍ ପିଂଗଳ ସମୟର ଜଣେ ଜଣେ ଅତୃପ୍ତ ନାୟକ - ସେଇ ଶମୀଖାଖାର ସଂଧାନରେ ଘୁରି ବୁଲୁଚୁ, ଯେଉଁଠି ସଂଗୋପିତ ଆମର ଶୌର୍ଯ୍ୟ ଓ ପୁରୁଷୋକାର ! ...... ଆମକୁ ଦିନେ ଫେରିବାକୁ ହେବ - ସହରଠୁ - ସମୁଦ୍ରରୁ - କବରଠୁ ... ଜୀବନର ଭିଡ଼ ଆଉ କୋଳାହଳ ଭିତରୁ !"

ଏକ ଶୁଭ୍ର କପୋତ ପକ୍ଷୀ - ଆମର ପଥ ପ୍ରଦର୍ଶକ । ସେ ପଥ ପ୍ରେମର ପଥ ... ପ୍ରଶାଂତିର ପଥ... ଜୀବନର ପଥ ! ସେ ପଥରେ ଗୁଳି ଫୁଟେନା, ଫୁଲ ଫୁଟେ - ସେ ପଥରେ ସିପାହୀର କଦମ୍ ପଡ଼େନା, ମଣିଷର ପାଦ ପଡ଼େ ।" ମାନବବାଦୀ ଚିନ୍ତାଧାରାକୁ ଶ୍ରେୟ ଦେଇଛନ୍ତି କବି ଗିରିଜା କୁମାର । ସେ ଆଶା ପୋଷଣ କରିଛନ୍ତି ନକୁଳ ଚନ୍ଦ୍ରଙ୍କ କବିତା ସ୍ୱପ୍ନରୁ ଫେରିଆସୁ ବାସ୍ତବତାକୁ । ପ୍ରେମ ପ୍ରଣୟ ଅପେକ୍ଷା ମଣିଷର ଜୀବନ ପଥ କାବ୍ୟ - ଭୂମିରେ ଅଭିଷିକ୍ତ ହେଉ । କିନ୍ତୁ ନକୁଳଚନ୍ଦ୍ରଙ୍କ କାବ୍ୟ ସାମ୍ରାଜ୍ୟ ସବୁବେଳେ ମଣିଷର ଦୁଃଖ, ଶୋକ, ସ୍ମୃତି ଓ ବିସ୍ମୃତିକୁ ନେଇ ମହିମାମଣ୍ଡିତ । କବିତାରେ ସେ ଯେତିକି ଭାବ ପ୍ରବଣ ସେତିକି ନିର୍ଲିପ୍ତ । ସୃଜନଶୀଳତାର ଲୀଳାକ୍ଷେତ୍ର ଭୋଗୀର ନୁହଁ ଦାର୍ଶନିକର ନୁହଁ ପ୍ରେମିକର ନୁହଁ ନିଚ୍ଛକ୍ ମଣିଷର । ଯେଉଁଠି ଆସକ୍ତି - ବୈରାଗ୍ୟ, ପ୍ରେମ - ପ୍ରଣୟ, ଦୁଃଖ-ସୁଖ, ସ୍ୱପ୍ନ - ବାସ୍ତବତା ସମପରିମାଣରେ ସ୍ଥାନିତ। ଅନୁଭବୀ ମଣିଷ ପରି ପ୍ରଲମ୍ବମାନ, ସ୍ୱପ୍ନ ପକ୍ଷୀପରି ଦିଗନ୍ତଛୁଆଁ। କବିଙ୍କ ସଲ୍ଲଜ ଉଚ୍ଚାରଣ ବେଶ୍ ପ୍ରାଣବାନ ଓ ମାଟିମନସ୍କ -

ଯେଉଁଠି / ଅନେକ ୵ ଖୋଜର ସ୍ମୃତି
ସେଠି / ଗୋଟିଏ ବେଳାଭୂମି । x x x x
ଯେଉଁଠି / ଅନେକ ପକ୍ଷୀର ଉଦ୍ବୋଧନ
ସେଠି / ଗୋଟିଏ ଆକାଶ (ତ୍ରିପଦୀ: ଏବଂ ପୁନରପି, ପୃ-୧୩)

ନକୁଳ ଚନ୍ଦ୍ରଙ୍କ କବିତା ଛିନ୍ନମୂଳ ନୁହେଁ । ଏହା ନିଜ ମାଟିରେ ଗୋଡ଼ଥାପି ଆକାଶକୁ ଧରିବାକୁ ଚେଷ୍ଟା କରେ। ନିଜ ଗାଁ ମାଟି, ନଦୀ, ପାହାଡ଼ ପ୍ରକୃତି ତାଙ୍କ କବିତାର ଭାଗ କଥାକୁ ଅକ୍ତିଆର କରନ୍ତି । ଗାଁରୁ ସହର ପ୍ରାଚୀନରୁ ଆଧୁନିକ ତାଙ୍କ କଳାପକ୍ଷ । ଗାଁକୁ ଖୋଜିଲା ବେଳେ ପ୍ରଶ୍ନ କରେ ସେ ପ୍ରିୟା ଅବା ବଧୂ ? ଇତିହାସ ଭିତରେ ପ୍ରତ୍ନତତ୍ତ୍ୱ, ପ୍ରତ୍ନତତ୍ତ୍ୱ ଭିତରେ ପ୍ରକୃତି, ପ୍ରକୃତି ଭିତରେ ଜୀବନର ମଧୁ । ନିଜ ଗାଁର ଭଣିତା କରନ୍ତି କବି -

ଇତିହାସ ଜାଣିନାଇଁ ଗୁଂଫାର ବୟସ
ଇତିହାସ ଶୁଣିନାଇଁ ସେମାନଙ୍କ ହସ
ପଶାପାଲି / ସୀତା କୁଣ୍ଡ
ଭଙ୍ଗାଦୀପ / ଲଣ୍ଠିତ ଚଉରା
ସମସ୍ତେ କହନ୍ତି / ମଞ୍ଜା
ତଳେତାର ଗାଆଁ
ଗୋଡ଼ିସାହି ନାଆଁ, (ସେ ଗାଆଁର ଲୋକ ସିଏ, ପୃ-୨୮)

ଲୋକଗୀତ ପରି 'ସୁନାପକ୍ଷୀ, ନିଜର ଗୋଟିଏ ଇଚ୍ଛା, ସ୍ୱର୍ଗଦ୍ୱାର ପ୍ରଭୃତି କବିତାର ମୂର୍ଚ୍ଛନା ବେଶ୍ ପ୍ରୀତିପଦ ଓ ସ୍ନେହସିକ୍ତ । କବିଙ୍କର "ଗୋଟିଏ ସୂର୍ଯ୍ୟ ଏବଂ ତାର ପ୍ରତିଟି ସକାଳ" କବିତାରେ



ଚିତ୍ରକଳ୍ପର ବାସ୍ତବବାଦୀ ପ୍ରୟୋଗ ମାର୍ମିକ ଜଣାପଡ଼େ -

"ନହନହକା / ବଂକା / ମୁଠାଏ ଖଡ଼ା:/ନାରୀ ।।"
"ହାଡ଼ମାଳ / ଓ / ହଡ଼ା / ବିତାଏ ନଡା : / ପୁରୁଷ ।।"

ନକୁଳ ଚନ୍ଦ୍ରଙ୍କ 'ଏବଂ ପୁନରପି' ପୁସ୍ତକର ପୃଷ୍ଠବନ୍ଧରେ ତାଙ୍କର ଅନ୍ୟଜଣେ ସତୀର୍ଥ କୁମୁଦ ଚନ୍ଦ୍ର ଦାଶଙ୍କ "ଏବଂ ପୁନରପି ଓ କବି ନକୁଳ ଚନ୍ଦ୍ର" ଲେଖାଟି ସ୍ଥାନିତ । ଏଥିରେ ନକୁଳ ଚନ୍ଦ୍ରଙ୍କ "ସମୟ" କବିତାର ପଞ୍ଚମ ଭାଗଟି ସଂହତିଚ୍ୟୁତ ବୋଲି ଦର୍ଶାଯାଇଛି । ସେହି ସଂହତିଚ୍ୟୁତ ପଦଟି ହେଲା -

ସମୟ,
ତମେ ନାରୀ !
ତମେ ସେଇ ତ୍ରେତୟାର
କୁଳଟା ଧୋବଣୀ
ସମୟ
ତମେ ନଦୀ
ତମେ ସେଇ ଗୋମତୀ ଓ
ହୋୟାଂ ହୋ'ର
କୂଳଖିଆ ପାଣି । (ସମୟ : ଏବଂ ପୁନରପି - ପୃ-୧୨)

କୁମୁଦ ବାବୁ କାହିଁକି ଏହି ପଦଟିକୁ ସଂହତିଚ୍ୟୁତ କହିଲେ ବୁଝାପଡ଼େନା । କାରଣ କବିତାର କ୍ରମ- ପରିଣାମ ଏୟାହିଁ ହେବାର ଥିଲା । କବିତାର ୪ର୍ଥ ପଦରେ 'ସରଯୁର ନୀର' "ପୁତ୍ରହରା ଅନ୍ଧମୁନି" ପ୍ରୟୋଗ ରାମାୟଣର କଥା ବ୍ୟାଖ୍ୟାନ କରେ । ତୃତୀୟ ପଦର 'ସୂର୍ଯ୍ୟାସ୍ତ ଆଇନ' ଓ 'ସତୀଦାହ ପ୍ରଥା' ବୈଦେଶିକ ହସ୍ତକ୍ଷେପ ଓ ସାମାଜିକ ଦୁର୍ବ୍ୟବସ୍ଥା କଥା ବ୍ୟଞ୍ଜିତ କରେ । ପ୍ରଥମ ପଦରେ 'ପୋଡ଼ା ଭୂଇଁ' ପ୍ରୟୋଗ waste land ର ମହାନତା ପ୍ରଖ୍ୟାପନ କରେ । ଏମିତି ଏକ ବର୍ଣ୍ଣନା କ୍ରମରେ ଉଦ୍ଧୃତ ପଦର ତ୍ରେତୟାର ଧୋବଣୀ (ରାମାୟଣର ପାତ୍ରୀ) ବା ଗୋମତୀ ଓ ହୋୟାଂହୋ ନଦୀର ଯନ୍ତ୍ରଣା ସଂହତିଚ୍ୟୁତ ମନେ ହୁଏନା ।

ଅନୁଭବର ସୂକ୍ଷ୍ମ ଚିଦାକାଶରେ ଅଗଣିତ ତାରା ଅନୁରଣନ ପରି ନକୁଳଚନ୍ଦ୍ରଙ୍କ କବିତାର ସ୍ଥିତି । ପ୍ରେମରେ ବିଫଳ କବି ସ୍ୱୀକାର କରନ୍ତି -

ବର୍ଷକର ଝିଅ ମୋର ପ୍ରେମ ।
ଶୋଇ ଯାଇଅଛି କଫିନ୍ ଭିତରେ । (କଫିନ ଭିତରେ : ଏବଂ ପୁନରପି - ପୃ-୭୧)



ପରବର୍ତ୍ତୀ କବିତା "କବର'ରେ ନିଜ ପ୍ରେମର ବିଫଳତାରେ ମୁହ୍ୟମାନ କବି ଘୋଷଣା କରନ୍ତି -

ଧବଳ କବର
ଧବଳ ଚଦର ସିଏ
ଗୋଟିଏ ଜନ୍ମର ।

ଧବଳ କବର
ଧବଳ ପ୍ରତୀକ ସିଏ
ଗୋଟିଏ ମୃତ୍ୟୁର ।

ଧବଳ କବର
ଧବଳ ପ୍ରଣୟ ସିଏ
ଏକାଂତ ନିଜର । (କବର : ଏବଂ ପୁନରପି, ପୃ-୭୨)

ନକୁଳ ଚନ୍ଦ୍ରଙ୍କ 'ଏବଂ ପୁନରପି'ରେ ଶବ୍ଦ ପ୍ରୟୋଗ ନିର୍ଦ୍ଦିଷ୍ଟ, ଭାବପକ୍ଷ ସ୍ୱଚ୍ଛ, ସୂକ୍ଷ୍ମ ପ୍ରେରଣାର ଦ୍ୟୋତକ। କ୍ଷୁଦ୍ର ପରିସର ମଧ୍ୟରେ କବିତାର ବ୍ୟାପ୍ତି ପ୍ରସାରଣଶୀଳ । ବୁଦ୍ଧିଦୀପ୍ତ ଚିତ୍ରକଳ୍ପ, ଅର୍ଥ ସାନ୍ଦ୍ରତାକୁ ସାର୍ଥକ କରିଛି । କବିତାର ବେଗ ସଂଚରଣଶୀଳ ଆବେଗ ଅର୍ଥ ଦ୍ୟୋତକ ଓ ପରିଣତି ଉଷ୍ମ ଓ ପ୍ରାଣବାନ ନିଜ ମାଟିରେ ଦୃଢ ଭାବରେ ଠିଆ ହୋଇ ଆକାଶ ଗୋଟାକୁ କୋଳେଇ ନିଅନ୍ତି । ଉଦାତ୍ତ ଭାବ ବନ୍ଧନ ଭିତରେ ପକ୍ଷୀଟିଏ ପରି ମୁକ୍ତିର ରାହା ଖୋଜନ୍ତି ଏବଂ ମୁକ୍ତ ଆକାଶକୁ କାକଳୀରେ ଭରି ଦିଅନ୍ତି । ନକୁଳ ଚନ୍ଦ୍ରଙ୍କ ପ୍ରଥମ କବିତା ପୁସ୍ତକ ଆଧୁନିକ ଜୀବନ ଯଂତ୍ରଣାରେ ସିଦ୍ଧ । ମୃତ୍ୟୁଚେତନା, ପ୍ରଣୟ ଚେତନା, ପ୍ରୀତି ଓ ସଂପ୍ରୀତିର ମଧୁର ମୂର୍ଚ୍ଛନା ଭିତରେ ଗାଁ ମାଟିର ଜୀବନ ଉଚ୍ଛଳି ଉଠିଛି । ମୃତ୍ୟୁ ଭିତରେ ଅମୃତ, ଅନ୍ଧାର ଭିତରେ ଆଲୋକର କ୍ଷୀଣ ରେଖାଟିଏ ପରି ମଣିଷର ଦୁର୍ବିସହ ଜୀବନକୁ 'ଏବଂ ପୁନରପି' ନୂଆ ଆଶା ଓ ବଂଚିବାର ନୂଆ ଦିଶା ଦେଖାଇଛି ।

**ଜୀବନକୁ କେମିତି ଭୋଗିଛି : କୃଶଘ୍ନ ଋତୁ ଓ ଗୋଟିଏ ମିନତି**

'ଏବଂ ପୁନରପି' ପ୍ରକାଶନର ପରବର୍ଷ ଡିସେମ୍ବର ୧୯୮୧ରେ ନକୁଳ ଚନ୍ଦ୍ରଙ୍କ ଦ୍ୱିତୀୟ କବିତା ସଂକଳନ 'କୃଶଘ୍ନ ଋତୁ ଓ ଗୋଟିଏ ମିନତି' ପ୍ରକାଶ ପାଏ । ଏଥିରେ ୩୩ଟି କବିତା ସଂକଳିତ । "କୃଶଘ୍ନ ଋତୁ ଓ ଗୋଟିଏ ମିନତି : ଏକ ଦୃଷ୍ଟିପାତ" ଶୀର୍ଷକରେ ବୈଷ୍ଣବ ଚରଣ ସାମଲଙ୍କ ମୁଖବଂଧ ପୁସ୍ତକର ଶୋଭାବର୍ଦ୍ଧନ କରୁଛି ।

ପ୍ରଥମ ପୁସ୍ତକରେ ନକୁଳ ଚନ୍ଦ୍ରଙ୍କ ରୋମାଂଟିକ୍ କାବ୍ୟ ଭାବନା ଜୀବନବାଦୀ ଅଭିଲେଖ ପ୍ରତି ଆକର୍ଷିତ ହେଲାବେଳେ ଏହି ସଂକଳନରେ ଆଧ୍ୟାତ୍ମିକ ଦୃଷ୍ଟିଭଙ୍ଗୀର ଝଲକ ସର୍ବତ୍ର ପ୍ରତିଫଳିତ । ନକୁଳ ଚନ୍ଦ୍ରଙ୍କ କାବ୍ୟ ବିଭାକୁ ଯଥାର୍ଥରେ ବୈଷ୍ଣବ ଚରଣ ସାମଲ ବିଶ୍ଳେଷଣ କରନ୍ତି - "କବି

ନିରବ ସାଧକ । ସେ ପ୍ରଚାରର ପକ୍ଷପାତୀ ନୁହଁନ୍ତି। ଅଥଚ ଆତ୍ମବୀକ୍ଷା ଓ ଆତ୍ମ ଉଦ୍ଘାଟନର ସେ ଶାକ୍ତିଶାଳୀ ପରୀକ୍ଷକ । ଏକ କଠୋର ନୀରବତା ମଧ୍ୟରେ ସେ ଜୀବନକୁ, ଜୀବନର ବହୁମୁଖୀ ଦିଗକୁ, ଜୀବନର ପ୍ରବୃତ୍ତିକୁ, କାମନାକୁ ଯେପରି ଭାବରେ ଉପଲବ୍ଧି କରିଛନ୍ତି ତାକୁ ସେ ନିଜସ୍ୱ ଶୈଳୀ ମାଧ୍ୟମରେ (ଯଦିଓ କେତେକ ସ୍ଥଳରେ ପୂର୍ବସୂରୀଙ୍କ ଶୈଳୀର ଅନିଚ୍ଛାକୃତ ପ୍ରଭାବ ସୁସ୍ପଷ୍ଟ) ବେଶ୍ କାବ୍ୟ ଧର୍ମୀ ରୂପେ ଉପସ୍ଥାପନ କରି ଆପଣା କାବ୍ୟ- ଜଗତଟିଏ ଗଠନ କରିବାକୁ ସମର୍ଥ ହୋଇ ପାରିଛନ୍ତି ।" (ମୁଖବଂଧ, ପୃ-ଗ)

ସମୟର ପ୍ରାଣସ୍ପନ୍ଦନକୁ ଓ ପ୍ରେମର ବୃହତ୍ତର ପରିପ୍ରେକ୍ଷୀରେ ଅବଧାରଣା କରିବାରେ ନକୁଳ ଚନ୍ଦ୍ରଙ୍କ "ଏବଂ ପୁନରପି' ସଫଳ ହୋଇଛି । ତାଙ୍କର ଦ୍ୱିତୀୟ ସଂକଳନ 'କ୍ରୁଶସ୍ଥ ରକ୍ତ ଓ ଗୋଟିଏ ମିନତି'ରେ ପ୍ରେମ ପ୍ରଣୟର ପରିଚର୍ଯ୍ୟା, ବିଶ୍ୱ ପ୍ରକୃତିଙ୍କ ସହାବସ୍ଥାନକୁ ଆଧ୍ୟାତ୍ମିକ ପୃଷ୍ଠପୀଠିକାରେ ଅର୍ଥ ଦ୍ୟୋତକ କରିଛି । ପରମର ସାନ୍ନିଧ ଜୀବନକୁ ଉଚ୍ଚତର ସୋପାନରେ ଅଧିଷ୍ଠିତ କରିଛି । ମୃତ୍ୟୁ ଚେତନା ଓ ପ୍ରଣୟ ଚେତନାର ଅଭିନବ ସଂଶ୍ଳେଷ କାବ୍ୟ ଭୂମିକୁ ପ୍ରାଣବନ୍ତ କରିଛି ।

ଆତ୍ମ ଜିଜ୍ଞାସା ଭିତରେ ପ୍ରତିଫଳିତ ହୋଇଛି କାବ୍ୟ ପୁରୁଷର ଦ୍ୱୈତଚେତନା । ଆତ୍ମ ନିମଜ୍ଜମାନତା ଅଧିଭୌତିକ ଚେତନାର ସ୍ତରରୁ ଉଠି ନିଃସଂଗତାବୋଧକୁ ଅନନ୍ୟ ଜୀବନ ବୋଧରେ ରସାଣିତ କରିଛି । ବୈଦିକ ଶବ୍ଦଚର୍ଯ୍ୟାକୁ କବିତାରେ ରୂପାନ୍ତରିତ କଲାବେଳେ କବିଙ୍କ ଭାଷା ଆବେଦନକ୍ଷମ ହୋଇଥାଏ -

ବୋହି ଯାଉଥିବା ରୂପାନଈ
ଶୋଇ ଯାଇଥିବା ସଂପର୍କର ସୂର୍ଯ୍ୟ
ଓ ଭାଂଗିଯାଇଥିବା ଅମାନିଆ ଗଛ
ମାଂସର ସିତାରରେ
ତୁମ ପାଇଁ ସ୍ୱର ତୋଳେ ସମୟର ହାତ । (ରୂପାନଈ- ପୃ-୭)

କ୍ରୁଶସ୍ଥ ରକ୍ତ ଓ ଗୋଟିଏ ମିନତି ସଂକଳନର ପ୍ରାୟ କବିତା ପୂର୍ବରୁ ବେଦ ଓ ଉପନିଷଦର କିଛି ପଂକ୍ତି ଉଦ୍ଧୃତ କରି କବିତାକୁ କୌଳିନ୍ୟ ପ୍ରଦାନ କରିଛନ୍ତି ନକୁଳ ଚନ୍ଦ୍ର । ତାଙ୍କର କବିତା ଖାଂଟି କବିତା । ପ୍ରକୃତିପରି ସମୁଦ୍ର ପରି କଳନାଦିନୀ ଝରଣା ପରି । ହରିହର ମିଶ୍ରଙ୍କ କବିତାର ମୂଲ୍ୟାୟନ କଲାବେଳେ ନକୁଳ ଚନ୍ଦ୍ର ଯେଉଁ ବକ୍ତବ୍ୟ ବାଢନ୍ତି ତାହା ତାଙ୍କ କବିତା ପାଇଁ ପୂର୍ଣ୍ଣତଃ ପ୍ରଯୁଜ୍ୟ "କବିତାର ଏକ ମାତ୍ର ବ୍ୟାଖ୍ୟା ଯେ ତାହା କବିତା । ତାହାକୁ ବୁଝାଇବା ଦରକାର ନଥାଏ । ଆଷାଢ ଆକାଶର ଖଣ୍ଡେ ଭାସମାନ ନବମେଘକୁ ଅନୁଭବ କରି ହେବ, ହେବ ନାହିଁ ବୁଝାଇ । ଗୋଟିଏ ସଦ୍ୟ ପ୍ରସ୍ଫୁଟିତ ଗୋଲାପକୁ ବୁଝାଇବା କିପରି ? କୋକିଳର ମଧୁ ବର୍ଷି କୂଜନ କିମ୍ବା ଝରଣାର କଳକଳ ଯେମିତି ଜୀବନ ସଂଗୀତ । ଠିକ୍ ସେମିତି କବିତାର ଆଙ୍ଗିକ । (ଏଇ ବହି କଥା : ସମକାଳ କାବ୍ୟତତ୍ତ୍ୱ ଓ କବି ହରିହର ମିଶ୍ର : ନକୁଳ ଚନ୍ଦ୍ର ସାହୁ)

ନକୁଳ ଚନ୍ଦ୍ର ନିଜର ପ୍ରକାଶ ଭଙ୍ଗୀରେ ସ୍ପଷ୍ଟ ଓ ସ୍ୱଚ୍ଛନ୍ଦ । ପୂର୍ବସୁରୀଙ୍କ ଅପେକ୍ଷା ତାଙ୍କର ମିଥ୍ ଅଧିକ ବାସ୍ତବବାଦୀ, ପ୍ରୟୋଗ ଲକ୍ଷ୍ୟଭେଦୀ -

ହେ କୃଷ୍ଣ, ତୁମକୁ
ନା ମୋତେ ? କାହାକୁ ମୁଁ
ବସାଇ ରଥରେ
ଜନ୍ମର ଗୋପରୁ ମୃତ୍ୟୁର
ମଥୁରାକୁ ଫେରେ ? (ରୂପାନଈ)

ପ୍ରାରମ୍ଭିକ କାବ୍ୟଚର୍ଯ୍ୟା ଅନ୍ୟ ଅନେକ କବିଙ୍କ ପରି ପ୍ରେମ ଓ ପ୍ରଣୟକୁ ଆଦରି ନେଇଛି । ଯେମିତି ସମୟ ଅଣଲେଉଟା, ମେଘର ଚିଠି, ପ୍ରୀତି ପଦ୍ମର ସ୍ମୃତି, ସଂପର୍କ, ଜୀବନ ସୂର୍ଯ୍ୟାସ୍ତ, ନୀଳଚିଠି ପ୍ରଭୃତି କବିତା । ଏଥିରେ ପ୍ରେମର ପ୍ରତିଧ୍ୱନି ବେଶ୍ ନିବିଡ -

"ଶତ ଶତ । କଦଂବର ଦିହ ଛୁଇଁ ଛୁଇଁ
ଗୋଟିଏ ମିନତି :
ଚିହ୍ନା ଚିହ୍ନା । ଏକା ପ୍ରତିଶ୍ରୁତି
ତମକୁ ମୁଁ ଭୁଲିଯିବି ନାଇଁ । (ମେଘର ଚିଠି)

ପ୍ରେମ ତାଙ୍କର ସମାଜ ସହିତ ସଂଶ୍ଳିଷ୍ଟ । ସମାଜ ଜୀବନର ବ୍ୟତିବ୍ୟସ୍ତ ଚିତ୍ର ସହିତ ପ୍ରେମ ବର୍ତ୍ତମାନ । ଅଭାବି ଜୀବନ, ବିପର୍ଯ୍ୟସ୍ତ ଜୀବନ ଚର୍ଯ୍ୟା ଭିତରେ ପ୍ରେମ ଏକ କଦଂବ ରୋମାଞ୍ଚ -

ପ୍ରେମ: ବାରିବୁଣା କଅଁଳ ଛନ ଛନ
ଲେଉଟିଆ ଶାଗର ପଟାଳି
ଏବେ ଯିଏ ଆୟୁଷର କାଠ ଜାଳି ପୋଡ଼େ
ନିଜ ଦେହ ମାଂସର କଡେଇ
ସିଏ ସିନା ଜାଣେ,
ଅନୁଭୂତିର ଦା'ରେ
ଅଭାବୀ କୌଣସି ଏକ ଋତୁରେ
ମୂଳ ସିଝେଇ ଖାଉଥିବା ଶିରାଳ ହାତ
ଚିଠି ଖଣ୍ଡକୁ ଚିରି ଦିଏ । ଟୁକୁରା ଟୁକୁରା ।
ବୁଢା ସାମଲ ବାଡ଼ ବୁଜେ ଉଜୁଡ଼ା ଇଛାର । (ନୀଳଚିଠି, ପୃ-୭୧)

'ତମ ଗାଁ ରାସ୍ତ ଉପରେ ମୋ ଗାଡ଼ି ଆଲୁଅ' କବିତାରେ ପ୍ରେମର ବାସ୍ତବ ଦୃଶ୍ୟ ବେଶ୍ ମାର୍ମିକ ।





ପ୍ରେମର ଉର୍ଦ୍ଧ୍ୱରେ ସମାଜର ଅସହାୟ ବ୍ୟବସ୍ଥା ଭିତରେ ଘାଣ୍ଟି ଚକଟି ହେଉଥିବା ଆଧୁନିକ ମଣିଷର ହାହୁତାଶପୂର୍ଣ୍ଣ ଜୀବନ ଓ ତାର ନୈସର୍ଗିକ ଉପସ୍ଥାପନା ମୋ ସହରର କେଲେଣ୍ଡର, ଜଳନ୍ତା ନଈ, ଭୁଲଚିଠି ପ୍ରଭୃତି କବିତାରେ ସଫଳୀକୃତ।

ନକୁଳ ଚନ୍ଦ୍ରଙ୍କ ବିମ୍ବ ଓ ଚିତ୍ରକଳ୍ପ ଦୁର୍ବୋଧ ନୁହେଁ ବରଂ ଏହା ସହଜଲଭ୍ୟ ଶାଣିତ ଏବଂ ପ୍ରାଣବନ୍ତ । କୁଆଁରୀର ସ୍ତନ ପରି ଧୀରେ ଧୀରେ ଫୁଲେ, ତମେ ଆସିବ ମୋ ଗାଁର ଏରକା ଆଡ଼କୁ, ଭେଟିବାକୁ ସକାଳର ନଗ୍ନ, ସୁନା ବେଙ୍ଗ ଚୁପି ଚୁପି ଗୁମୁରେ । ମୋ ଦେହର ଚନ୍ଦ୍ରଭାଗାରେ ... ତମ ପାଇଁ ସପ୍ତମୀ, ମୋ ଇଚ୍ଛାର କାମୋଦି ଧ୍ୱନି, ଅଭାବର କୋରଡ଼ିଆ ଆଖି, ଆକାଶକୁ ଚିରିଚି କିଏ, ସିଏ ମାଗେ ସମୟର ଶେଷ ବାଗ୍‌ଦାଦ, ସୋହାଗର ନୀଳନଈ, କୋକିଳ ସଂଗୀତ, ବେଳା ସହ ସମୁଦ୍ରର ମୈଥୁନ, ନିରିହ ଗଛଙ୍କ ହାତ କାନ ଝିଙ୍କି କେତେ ଓଟାରିଲା, ଅନେକତୃଷ୍ଣାର ନଈ ଭୋକିଲା ପର୍ବତ ଏମିତି ଅଜସ୍ର ମୌଳିକ ପ୍ରୟୋଗ ତାଙ୍କ କବିତାକୁ ଏକ ସ୍ୱଚ୍ଛ ପ୍ରକାଶ ଛଟା ପ୍ରଦାନ କରିଛି ।

ପ୍ରେମ, ଜୀବନ, ଆଧ୍ୟାତ୍ମିକତା, ସମାଜ ଚିତ୍ରକୁ ନେଇ ନକୁଳ ଚନ୍ଦ୍ରଙ୍କ "କୃଶଷ୍ଟ ଋତୁ ଓ ଗୋଟିଏ ମିନତି' ସଂକଳନ ଉର୍ଜ୍ଜସ୍ୱଳ । ନକୁଳ ଚନ୍ଦ୍ରଙ୍କ ଏବର କବିତାର ଗଢଣରୀତି, ଚିତ୍ରକଳ୍ପ ପ୍ରୟୋଗ, ଆଂଚଳିକ ଓ ଆତ୍ମିକ ଉତ୍କର୍ଷତାର ପହିଲି ପାଠ ଏହି ସଂକଳନ ଦ୍ୱୟରେ ସନ୍ନିବିଷ୍ଟ । ଆଧୁନିକ କାବ୍ୟ ଧାରାର ପ୍ରତିଟି ପ୍ରସଙ୍ଗ କବିତାରେ ସମାହିତ ଓ ପୁଷ୍ପିତ । କବିତାର ମୁଖ୍ୟ ବିଷୟ ମାଟିମୁହାଁ ମଣିଷର ଜୀବନ ଚରିତ। କବିତାର ଭାଷା ସରଳ ଆକୃତ୍ରିମ ଓ ଭାବଦ୍ୟୋତକ । ବକ୍ତବ୍ୟ ସରଳ ସାବଲୀଳ ଓ ବ୍ୟଞ୍ଜନାଧର୍ମୀ । ନକୁଳ ଚନ୍ଦ୍ର ଓଡ଼ିଆ କବିତାର ଏକ ଫଲ୍ଗୁ ଧାରା।

### ପ୍ରାରମ୍ଭର ଅମୃତ କଳଶୀ : ବାକ୍‌ମୟୀ

ଏହି ସମୟ ଖଣ୍ଡରେ କବିଙ୍କର ଅନୁସନ୍ଧିତ୍ସୁ ଚେତନା ଭାରତୀୟ ଓ ଆନ୍ତର୍ଜାତୀୟ ସାହିତ୍ୟକୁ ବିଶ୍ଳେଷଣ କରିଛି। ଓଡ଼ିଆ ଭାଷାର ଉନ୍ମେଷର ଉତ୍ତରିତ ଅଧ୍ୟାୟକୁ ଅନୁଧ୍ୟାନ କରିଛି । ଯୋଗ ତାନ୍ତ୍ରିକ ପୁସ୍ତକ, ଆଧ୍ୟାତ୍ମିକ ଭାବ ସମୁଦ୍ରକୁ ମନ୍ଥିତ କରି ଅମୃତ ଅଭୀପ୍ସାରେ ହୋଇଛି ତଲ୍ଲୀନ । ଏହି ତଟସ୍ଥ ମୁଦ୍ରାର ଅମୃତମୟୀ ପରିଣାମ 'ବାକ୍‌ମୟୀ' (୨୦୧୯) କବିତା ସଂକଳନ ।

କବିଙ୍କ ଭାଷାରେ ମାନସିକ ଓ ପ୍ରାଣୀଜ ଚେତନାର ଚିତ୍ର କବିତା । କବିତା ମାନବ ଅଂତର୍ମନର ବାର୍ତ୍ତା । ତାଙ୍କ କବିତା ତାଙ୍କ ଜୀବନର ଅଂଶ, ତାଙ୍କର ଆତ୍ମଜୀବନୀ ବିଶେଷ । କବିତା ତାଙ୍କର ଅନୁଭୂତିର ଚିତ୍ର, ଭୋଗ ବୈଭବର ବିଭୂତି । ଆୟୁଷ ପରି ସଂଲଗ୍ନ । କବିତାର ଉହ୍ୟ ଉପସ୍ଥିତି ଯନ୍ତ୍ରଣାଦାୟକ । ଏହି ସ୍ୱୀକାରୋକ୍ତି ମଧ୍ୟରେ ପ୍ରସ୍ଫୁଟିତ ହୁଏ କବି ନକୁଳ ଚନ୍ଦ୍ରଙ୍କ କାବ୍ୟ ଜିଜ୍ଞାସା, ବାସ୍ତବ ଭିତ୍ତି ଓ ଅନ୍ତର୍ଚେତନାର ଅନ୍ୱେଷା । ଏହାରି ଭିତରେ ହିଁ ଜଳି ଜଳି ଶୁଦ୍ଧ ସୁବର୍ଣ୍ଣ ପରି ଆଉଟି ହୋଇ ପ୍ରକାଶ ଲଭେ 'ବାକ୍‌ମୟୀ' ।

ବାକ୍‌ମୟୀ ୭୩ଟି ସୁଲିଖିତ ଆତ୍ମିକ ଭାବ ଆବେଦନ ସିକ୍ତ କବିତାର ସମାହାର । କବିତା ଗୁଡ଼ିକ ସାରସ୍ୱତ ଉପବନର ଏକ ଏକ ପୁଷ୍ପ । ଯେମିତି ଆକାଶର ତାରା, ଯେମିତି ଦୂରସ୍ଥ ସମୁଦ୍ରରେ ବୋଇତ, ଯେମିତି ମଣିଷ ହୃଦୟର ପ୍ରେମ, ଯେମିତି ନଦୀପଠାର କାଶତଣ୍ଡୀ, ଯେମିତି ମହାକାଳ ବକ୍ଷରେ ସରୁଧାରେ ବିଜୁଳି, ଯେମିତି ଆଧ୍ୟାତ୍ମିକ ଚେତନାର କ୍ଷୀଣ ମନ୍ମୟ ଓଁକାର ଧ୍ୱନି ।

ନକୁଳବାବୁଙ୍କ କବିତା ଉପବୀତ ପରି ପବିତ୍ର, ସନ୍ଧ୍ୟା ପରି ଶୀତଳ, ନଦୀର ଧାର ପରି ପ୍ରବହମାନ, ପ୍ରକୃତି ପରି ଶୋଭାବନ, ପକ୍ଷୀ ପରି ସ୍ୱାଧୀନ, ପ୍ରେମିକା ପରି ଚୁଲବୁଲ ଯେମିତି କାବ୍ୟାତ୍ମାକୁ କାୟାନ୍ତରିତ କରିଛି ଶରତର ଏକ ଶୀତ ଋତୁ । କବି ଭଲ ପାଇବାର ଘନନୀଳ ସମୁଦ୍ରରେ ଚିରକାଳ ବନ୍ଦୀ । ନକୁଳଙ୍କ କବିତାରେ କଳ୍ପନା ଅପେକ୍ଷା ସତ୍ୟଶିବ ସୁନ୍ଦର ଅଧିଷ୍ଠିତ । କଳା ରୂପାନ୍ତରିତ ସୌନ୍ଦର୍ଯ୍ୟରେ ସୌନ୍ଦର୍ଯ୍ୟ ଧରାବତରଣ କରେ ସ୍ୱତଃସ୍ଫୂର୍ତ୍ତ ଅନୁଭବରେ। ଅନୁଭବ ଦୀପ୍ତ ଓ ଭାସ୍ୱର ହୁଏ କଳାରେ, ସତ୍ୟରେ । ଜୀବନର ମହିମାଗାନରେ ସଂଜୀବିତ ହୁଏ ଧରା । ଧରାର ଶୋଭା ପସରା ପ୍ରତିଫଳିତ ହୁଏ ଆକାଶରେ, ପ୍ରତିଧ୍ୱନିତ ହୁଏ ଦିଗନ୍ତରେ, ଅଧିଷ୍ଠିତ ହୁଏ ମହାକାଳ ବକ୍ଷରେ । ତେଣୁ ସନ୍ଦୀହାନ୍ ହୋଇଉଠନ୍ତି କବି ଏବଂ ଦୃପ୍ତ କଣ୍ଠରେ ପ୍ରଶ୍ନ କରନ୍ତି -

ବିଜୟର କେନ୍ଦ୍ରସ୍ଥଳ କେଉଁଠି
କେଉଁଠି ପ୍ରାଣ ପ୍ରାଚୁର୍ଯ୍ୟର ଚିନ୍ମୟ ଐଶ୍ୱର୍ଯ୍ୟ
ଶକ୍ତିଦୃପ୍ତ ବିଶ୍ୱାସର ମଧୁକୋଷ ଉଦ୍‌ବୋଧିତ
ଏଇଠି, ଏଇଠି ସେ ଅବିନଶ୍ୱର ପଦ୍ମପୁଷ୍ପ । (ଆବାହନ - ପୃ-୩୮)

ଏହି ସଂଶୟାତ୍ମାର ଫଲ୍‌ଗୁକୁ ଉପନିଷଦର ବାଣୀ ପରି ଗୋଟିଏ ପଂକ୍ତି ଶାନ୍ତ କରିଦିଏ, କରିଦିଏ ଶିତଳ ମାୟାର ବହୁବିଚିତ୍ରତା, ବିଲୟ ଏକମେବ ସତ୍ୟ । (ସୀମାଆରପଟ ଭୂମି - ପୃ-୩୯)

ଏହି ପରମ ସତ୍ୟର ଅନୁସନ୍ଧିତ୍ସା କବି ମନକୁ ଭାରମୁକ୍ତ କରିଛି । ପରମ ସହିତ ନିଜର ତୁଳନାକରି ଆତ୍ମା ପରମାତ୍ମାର ସଂପର୍କକୁ ଉଚ୍ଚତର ଦିଗନ୍ତରେ ପ୍ରତିଷ୍ଠିତ କରିଛନ୍ତି । ଆଧ୍ୟାତ୍ମିକ ଚିନ୍ତନର ନିର୍ଯ୍ୟାସ ପରି ସ୍ଫୁରିତ ହୁଏ ସ୍ୱୀକାରୋକ୍ତି -

'ମୁଁ' ବହିର୍ଜଗତ, ବ୍ୟବହାରିକ, ଲିପ୍ତ ।
ଅଥଚ 'ତମେ' ସବୁହେଲେ ବି ଅର୍ନ୍ତଲିପ୍ତତାରୁ ମୁକ୍ତ
ପରିପୂର୍ଣ୍ଣ, ସଂପୂର୍ଣ୍ଣ, ଚିରନ୍ତନ
ଜୀବନର ଜୀବନ ଓ ପ୍ରେମର ପ୍ରେମ । (ତୁମେ - ପୃ-୧୬)

ଆଧ୍ୟାତ୍ମିକତା ଯେମିତି ପ୍ରେମର ଅନ୍ୟରୂପ । ନାରୀ ପୁରୁଷର ପ୍ରେମ ଦୈହିକ ହେଲାବେଳେ ଆତ୍ମା ପରମାତ୍ମାର ମିଳନ ଅତୀନ୍ଦ୍ରିୟ । ଏହି ଦୁଇ ପ୍ରକାର ପ୍ରେମର ବ୍ୟବଧାନ ଖୁବ୍ କ୍ଷୀଣ

କବି ଦୃଷ୍ଟିରେ । ତୁମେ ଭିତରେ କେତେବେଳେ ପରମପୁରୁଷ ଦେଖାଯାନ୍ତି ତ କେତେବେଳେ ଦିଶିଯାଏ ପ୍ରେମିକାର ମୁହଁ । କବି ଚିତ୍ରନ୍ତି ଯାହା ତାକୁ ନେଇ ଧନ୍ଦି ହୁଏ ପାଠକ -

ମହୁର ଶେଯଟା ତ ଭୋଗ ମଣ୍ଡପ
ତୁମେ ମାଦକତାରେ ବିସ୍ତୃତ ଅସୀମ ରାସ
ମୁଁ ଅଭେଦ୍ୟ କାମନାର ଆଦି ନିଶା
ଫୁଲବିଂଚା ଅଭିଶାପରେ ଅହରହ ଜଳଂତା । (ଭବ ମଣ୍ଡପ-ପୃ-୩୧)

କବିଙ୍କ ପ୍ରାକ୍ ଯୌବନର ଅନିନ୍ଦ୍ୟ ପ୍ରେମିକା, ଉତ୍ତର ପ୍ରୌଢତ୍ୱର ସୁନ୍ଦର ସ୍ୱପ୍ନ ଓ ଆଧ୍ୟାତ୍ମିକତା ଏକାକାର ହୋଇଯାନ୍ତି । ତାତ୍ପର୍ଯ୍ୟର ସମୁନ୍ନତ ଆବୃତ୍ତି ଭିତରେ ଉତ୍ତର ବୟସରେ ଭୁଲର ଭାସ୍କର୍ଯ୍ୟକୁ ଭୁଲି ପୂର୍ଣ୍ଣତା ଆଡକୁ ଗତି। ଅନିବାର୍ଯ୍ୟ ଆବଶ୍ୟକତାର ଶୂନ୍ୟ ପରି ଅତୀତର ସ୍ମୃତି ଭାରି ଉତ୍କଟ ଅଥଚ ଚିଦାତ୍ମା, ପାପମୁକ୍ତ, ଚାପଯୁକ୍ତ ଅଥଚ ନିବୃତ୍ତିରେ ବଂଧା ।

ପ୍ରବୃତ୍ତି ଓ ନିବୃତ୍ତିର ଦୋଛକିରେ ବନ୍ଧା ପଡ଼ିଛି କାବ୍ୟ ପୁରୁଷ । ସମୟ ସମାପ୍ତ ପ୍ରାୟ ଏଣୁ ସମର୍ପି ଦେଉଛି ସବୁକିଛି ପାପପୁଣ୍ୟ ଉଭୟଙ୍କ ପାଇଁ -

ତମକୁ ସମର୍ପିଦେଲି ମୋକ୍ଷ, ବ୍ରହ୍ମଭୂତ
ପ୍ରସନ୍ନାତ୍ମା ମୋ ! ତମକୁ ସମର୍ପି ଦେଲି
ସମସ୍ତ ସାତ୍ତ୍ୱିକ ପାପ ସମ୍ଭବ ମୋ ! ମିନତି
ନିଅ ମହାମାୟାଙ୍କ ଗ୍ରନ୍ଥିଭେଦ, ତତ୍ ଏବଂ ସତ୍ । (ସାବିତ୍ରୀ - ପୃ- ୫୩)

ଜନ୍ମ ଜନ୍ମର ଅଭିଳାଷ ମାଟି ଓ ଆକାଶ ମଧ୍ୟରେ ଚିତ୍ରାୟିତ ହୁଏ । ପରମକୁ ନିବେଦି ଦିଅ ଆୟୁଷ, ନଟେଇରୁ ଡୋର ଛିଣ୍ଡାଅ । ଜୀବନ ମାନେ ଆତ୍ମାର ଆରୋହଣ । ଆରୋହଣ କରିବା ଶୃଙ୍ଗ, ପ୍ରକୃତି, ନଦ, ନଦୀ, ବଣ ଜଙ୍ଗଲ। ଆରୋହଣ କରିବା ଶୈଶବ, ଯୌବନ ଓ ଜରା । ପୁଲକିତ ହେବା ଜୀବନର ଯନ୍ତ୍ରଣାରେ । ଖୋଜିବା ସେଇ ଅତୀତକୁ, ଶୈଶବକୁ, ମାମୁଁ ଘର ଗ୍ରାମ ପଥକୁ । ଏ ସବୁର ପ୍ରକାଶନ ପାଇଁ ଶବ୍ଦ ଏକ ଅବଲମ୍ବନ, କବିତା ଏକ ମାଧ୍ୟମ । ଅଂଶୁପାର ସୌନ୍ଦର୍ଯ୍ୟରେ ମୁଗ୍ଧ କବି ତେଣୁ ଝୁରି ହୋଇଛନ୍ତି ତାଙ୍କର ଶୈଶବର ସ୍ମୃତି, ଗାଁର ଅକପଟ ଜୀବନ -

ଅଂଶୁପା ତ ମୋ ଶିଶୁଦିନ ହସ
ଅଂଶୁପା ତ ମୋ କାଂଥ ଧରା ଚାଲି
ଅଂଶୁପା ମୋ ମାଇଁନର ସ୍କୁଲ ଡିବେଟର
ପୁରସ୍କାର ଖଣ୍ଡେ ଖାତା ଓ ପେନ୍‌ସିଲି ।

ଅଂଶୁପା ମୋ ଯୌବନର ପ୍ରଥମ ପୁଲକ
ମେଘଦୂତର ପ୍ରଥମ କଦମ୍ବ
ରାମାୟଣର ଆଦିଶ୍ଳୋକ ତମେ ମୋ
କେମିତି ତମକୁ ଭୁଲିବି ମୁଁ ନୀଳ କାଦମ୍ବିନୀ । (ଅଂଶୁପା-ପୃ-୭୭)

ନକୁଳଚନ୍ଦ୍ରଙ୍କ କବିତା ତାଙ୍କ ଜୀବନର ବୃତ୍ତଚିତ୍ର । ତାଙ୍କ ପ୍ରେମ, ଯନ୍ତ୍ରଣା, ସ୍ମୃତି, ଭୋଗଚର୍ଯ୍ୟାର ଅମଳିନ ଦସ୍ତାବେଜ କବିତା । ତାଙ୍କର ଚିତ୍ରକଳ୍ପ ଅଙ୍ଗେନିଭା ଘଟଣାର ପ୍ରତିଛବି । ତାଙ୍କର ଶୈଳୀ ନିଜର ଜୀବନ ଶୈଳୀ । ତେଣୁ ସେ କୁହନ୍ତି ପିଆଜ ନାଲିସୂର୍ଯ୍ୟ, ଧଳାଶାର୍ଟ ପିନ୍ଧା ଆକାଶ, ଚିରନ୍ତନ ପୁସ୍ତକର ଫର୍ଦ୍ଦେଚିହ୍ନା ବର୍ଣ୍ଣମାଳା, ସତ୍ୟର ବିଶେଷତ୍ୱ କରିଛି ଦସ୍ତଖତ, ମେଘ କନ୍ୟାର ସ୍ତନ ଚୁମୁଥାଉ ପହାଡର ଛାତି, ବାକ୍‌ର ମୁକୁଳା ପ୍ରବାହର ତୁମେ ଝୁଲନ୍ତା, ନୈଃଶବ୍ଦ୍ୟ ଭିତରୁ ସୃଷ୍ଟି କ୍ରିୟାର ଲୀଳା - ସ୍ଫୁରିତ, ଆତ୍ମ ଆବିଷ୍କାର ପାଇଁ ବାଟ ଓଠ ଯୋଡ଼ିକ, ରାତ୍ରୀର କବରୀ ପରି ଭାସ୍ୱର ଶୋଭନା ପ୍ରଭୃତି ପ୍ରୟୋଗ କାବ୍ୟ ସୌନ୍ଦର୍ଯ୍ୟକୁ ମହିମାମଣ୍ଡିତ କରିଛି । ଏମିତି ଅଜସ୍ର ଆଲଙ୍କାରିକ, ସୁଧାସ୍ରାବୀ ପଂକ୍ତି ନକୁଳ ଚନ୍ଦ୍ରଙ୍କ କବିତାରୁ ସଂଗ୍ରହ କରାଯାଇପାରେ ।

ନକୁଳ ଚନ୍ଦ୍ରଙ୍କ କବିତାରେ ସଂସ୍କୃତ ସାହିତ୍ୟର ନିର୍ଯ୍ୟାସ ଯେମିତି ସମାବିଷ୍ଟ ପାଶ୍ଚାତ୍ୟ କବିଙ୍କ କାବ୍ୟାନୁରଣନ ମଧ୍ୟ ଧ୍ୱନିତ । 'ତିକ୍ତ' କବିତାରୁ କିଛିଟା ଉଦ୍ଧୃତି ନିଆଯାଇପାରେ ।

ଆଉ ହସନାଇଁ ଗଡ ଅଫ ସ୍ୱୀଡ
ଏବେ ହୃଦୟ ମୋ ଶ୍ମଶାନର ଡ୍ରମ୍ (ତିକ୍ତ ପୃ-୯୩)
ବ୍ଲିଶ୍ ଏଣ୍ଡ ପେନ୍ ବି ଡ୍ରଂକ୍
ପାସସିଅନ୍‌ର ପ୍ୟାସନ କେମିତି ହେବ ତିକ୍ତ ? (ତିକ୍ତ)
ମୁଁ ବଡ଼ୀ ଅଫ୍ ଟ୍ରୁଥ
ଅଛି, ବ୍ୟବସ୍ଥାର ବିଧାନ ଭିତରେ । (ବାସ୍ନାର ପ୍ରହର)

ଶିଖାକରେ ପ୍ରଶ୍ନ, ଆଖିବହନ କରେ ଦାବୀ
ଭୁଲିଯିବା ଦିଏ ଉତ୍ତର
ଏକମାତ୍ର, ଏକମାତ୍ର ପରଫେକ୍ସନ୍ ଅଫ ସିଂପ୍ଳୁ ।

ଅପହଂଚ ସୌନ୍ଦର୍ଯ୍ୟ, ଅଚିହ୍ନା ଇମେଜ୍
ସିମ୍ବଲର ଓଢଣୀ ଭିତରେ ଅବଗୁଣ୍ଠିତା
ନବନୀତା କହେ କଥା । (ନିତ୍ୟ ସମାସ)

ଆକାଶ 'ଏ ଜାର ଅଫ୍ ଡ୍ରିମ୍' (ଅଗ୍ନିପୁଷ୍ପ)
'ଟ୍ରାଡିସନ ଅଫ ଥଟ'ରେ ଗୋଟିଏ ମଧବିଂନ୍ଦୁ ଆଶା । (ଆଶା)

କବି ଦ୍ୱିତୀୟ ଈଶ୍ୱର, କ୍ରାନ୍ତଦ୍ରଷ୍ଟା । ସେ ନିଜର ମନମତ ସାମ୍ରାଜ୍ୟ ସୃଷ୍ଟିକରେ । ଏଣୁ କୁହାଯାଏ -

ଅପାରେ କାବ୍ୟ ସଂସାରେ କବିରେବଃ ପ୍ରଜାପତିଃ
ଯଥାସ୍ମୈ ରୋଚତେ ବିଶ୍ୱଂ ତଥୈବଂ ପରିବର୍ତ୍ତତେ ।

ଅସୀମକୁ ନିଜର ସୀମିତ ସୀମା ଭିତରେ ପ୍ରତିଷ୍ଠିତ କରେ କବି । ନକୁଳ ଚନ୍ଦ୍ରଙ୍କ ଭାଷାରେ 'କବିତା' ବିପୁଳର ଅନୁଭବ । ଆତ୍ମିକ ଓ ପ୍ରାଣିକ ଚେତନାରେ ବିଦ୍ୟମାନ ଅରୂପଙ୍କ ରୂପାୟନ । ଯାହା ଚିଦାକାଶ (ସୃଜନର ଭୂମି) ତାହା ମୋ କବିତାରେ ଘଟାକାଶ ଓ ମଠାକାଶ୍ xxx । କବିତା ମୋ ଭିତରେ ଗାଢ ନୀରବତା ତାହାକୁ ମୁଁ ଶବ୍ଦରେ ଦୃଶ୍ୟମୟ କରିଛି । ମୋ ନୀରବତା ମୋ ପ୍ରାର୍ଥନା ଏବଂ ମୋ ପ୍ରାର୍ଥନା ମୋ ହୃଦୟ ସଂଗୀତ । ଓଁ ପରି ଏହା ଚିରପବିତ୍ର । xxx ଏଥିରେ ଚେତନା ହୋଇଛି ବିସ୍ତୃତ ଏବଂ ପରିବ୍ୟାପ୍ତ । ଉଚ୍ଚରୁ ଉଚ୍ଚତମକୁ ସ୍ପର୍ଶ କରିବାକୁ ଜୀବନ ପ୍ରକ୍ରିୟା ପାପୁଲି ବଢାଇ ହୋଇଛି ସଫଳ । ଏଥିରେ ଗଡ଼ ଇଜ୍ ଏ ପର୍ସନ ଉଇଥ ଫର୍ମ, ତାହା ମୋ କବିତାରେ ଉଲ୍ଲାସ (Ecstacy)ବା ମୋ କବିତାର ସ୍ୱାଦ (the taste)କବିତାରେ ମୁଁ ଈଶ୍ୱରଙ୍କ ସହିତ ଆଲିଙ୍ଗନାବଦ୍ଧ (ଶବ୍ଦଘରର ଭୂମି ଓ ଭିତ୍ତି-ପୃ-୫)

ନିଜ କବିତା ବିଷୟରେ ଏହି ଦମ୍ଭପୂର୍ଣ୍ଣ ସ୍ୱୀକାରୋକ୍ତି କବିତାର ନିଷ୍ଠାକୁ ପ୍ରତିପାଦିତ କରେ । କବିତାର ଉଚ୍ଚତା, ପରିଚ୍ଛନ୍ନତା ଓ ପ୍ରମେୟକୁ ଅଙ୍ଗୀକାରବଦ୍ଧ ଶିଳ୍ପୀର ପରମ ପରାକାଷ୍ଠା ଦୁର୍ମୂଲ୍ୟ ଐଶ୍ୱର୍ଯ୍ୟରେ କରେ ରୂପାନ୍ତରିତ।

ଓଁ ପରମ ପ୍ରେମ ରୂପାୟ ନମଃ (ଶିବସୂକ୍ତ)
ଲଭଇଜ୍ ଗଡ୍, ମୋ କବିତା ମୋ ଈଶ୍ୱର
ମୋ ଈଶ୍ୱର, ଏ ପ୍ରେୟାର, ଜୀବନ ପ୍ରକ୍ରିୟାକୁ
ପ୍ରାଣବନ୍ତ ଅସୀମକୁ, ସସୀମ ଊର୍ଦ୍ଧ୍ୱର ଶାନ୍ତି ଓ ପ୍ରଶାନ୍ତିକୁ ।
ତାଙ୍କ ଉପସ୍ଥିତି ତାଙ୍କୁ କରିଦେଇଛି ସସୀମ ସିଏ ମୋ ଆୟୁଷର ବିଭୂତି
ସିଏ ମୋ ଜନ୍ମ ବେଳର ମଧ୍ୟରାତ୍ରୀ
ଏବଂ ସିଏ ମୋ ମୃତ୍ୟୁବେଳର ଅମୃତ ମୁହୂର୍ତ୍ତ । (ଅଙ୍ଗୁଷ୍ଠ ମାତ୍ରଃ - ପୃ - ୧୦୭)

ଆଧ୍ୟାତ୍ମିକତାର ଦ୍ୱାହିଦେଇ ଅତିକ୍ରମ କରି ହୁଏ ଦୁଃଖର ସଂସାର । କବିଟିଏ ପ୍ରାଜ୍ଞ । ପ୍ରାଜ୍ଞ ହେଲେ ହିଁ ଭୁଲିହୁଏ ଦୁଃଖ, ମୃତ୍ୟୁକୁ କୋଳେଇ ନେଇ ହୁଏ, ଯେମିତି ଏକ ସାଧାରଣ ଦୃଶ୍ୟ ନାଟକର । ଅନ୍ୟ ମଣିଷର ଦୁଃଖକୁ ନିଜ ଭିତରେ ସାଉଁଟି, ନିଜ ଭିତରେ ସମାହିତ କରିବା ହିଁ ଯେମିତି କବିତା । କବିତାର ଶୀର୍ଷକ "ଆର. ଏନ୍. ମହାନ୍ତି" ମୃତ୍ୟୁ ଚେତନାର ଅପୂର୍ବ ଦସ୍ତାବେଜ । ପ୍ରେମରୁ ପ୍ରଣୟ ପଥ ସରେ ନାହିଁ ସ୍ମୃତିର ଆଳାପ ପରି, ଶୀତ ରାତି ଚା କପ ପରି । ଶିଶୁ ପୁତ୍ରର ମୃତ ଦେହକୁ ସାଉଁଟି ଚାଲିଥିବା ପିତୃ ପୁରୁଷର ଅସରନ୍ତି ଯାତ୍ରା, ଯେମିତି ଭର୍ତ୍ତି ସ୍ମିତର

ନୀଳଜ୍ୟୋସ୍ନା। କାବ୍ୟ ପୁରୁଷର ଦୁଃଖଦ ଘଟଣାକୁ ନିଜର ପ୍ରିୟ ପୌତ୍ରର ତିରୋଧାନ ସହିତ ଯୋଡି ଦୁଃଖର ବାଙ୍ମୟ ବିଳାସରେ କବିତା ପଢିବା କେତେ ଯନ୍ତ୍ରଣାକ୍ତ କେତେ ଶୋକ ଜରଜର -

ପୃଥିବୀକୁ ପରିତ୍ୟାଗ କରିବାର ମାନେ
କେବଳ ଆପଣ ଜାଣିଛନ୍ତି
ଆପଣଙ୍କ ପରି ଏତେ ପ୍ରାଜ୍ଞ ମୋ ପ୍ରିୟ ପୌତ୍ର
'ସ୍ୱାଗତ ବୋଧିସତ୍ତ୍ୱ' ହେଲା କେମିତି ?

ମଇ ଅଣତିରିଶ ଅଠର ମସିହା, ପୂର୍ଣ୍ଣମୀ ରାତି
ସିଏ ବି ମୋ ଡ୍ରଇଁ ଖାତାରେ ଆଙ୍କି ଦେଖାଇ ଦେଲା ମତେ
ମୃତ୍ୟୁର ଚିତ୍ରଟି । ବଡ ମର୍ମନ୍ତୁଦ
ଦୁଃଖ ତା' ସମସ୍ତ ସୀମାଟପି ଯାଏ ଏମିତି ! (ଆର୍.ଏନ୍.ମହାନ୍ତି, ପୃ-୧୧୦)

ସମ୍ବନ୍ଧଯୁକ୍ତ ସୌନ୍ଦର୍ଯ୍ୟକୁ ପରିଶୋଧ କରିବାକୁ ହୁଏ । ପରିଶୋଧ କରିବାକୁ ହୁଏ ଜୀବନ । ଭୋଗିବାକୁ ହୁଏ ପ୍ରାରବ୍ଧ । ଫାଟିଯାଏ ହୃଦୟର ଆଖି ଚିରିହୋଇଯାଏ ପ୍ରାଣର ଲମ୍ବା କାଗଜଟି, ବୋଧିସତ୍ତ୍ୱର ବିରହରେ ଏକ ସ୍ୱର୍ଣକାତର, ଯନ୍ତ୍ରଣା ଜର୍ଜର, ଶୋକନିଷ୍ଠ କବିତା 'ବୋଧିସତ୍ତ୍ୱ' । କବିତାଟି ଯେମିତି ନକୁଳଚନ୍ଦ୍ରଙ୍କ ଅନ୍ତଫାଡ଼ି ଜନ୍ମ ନେଇଛି । ଶୀର୍ଷାସନରେ ଯେମିତି କ୍ରମଶଃ ଉର୍ଦ୍ଧ୍ୱଗ ମୋକ୍ଷ ଓ ଆଧ୍ୟାତ୍ମିକ ପଥରେ । ପ୍ରତିଟି ପ୍ରଣୀତ ସମାଧାନକୁ ଲିଭାଇ, ଅକର୍ତ୍ତା ପାଲଟିଯାଏ କବି ।

ଲିଭାଇ ଦେ'ରେ ଅବ୍ୟକ୍ତ ନିଃଶବ୍ଦତାକୁ
ଲିଭାଇ ଦେ' ପ୍ରଣୀତ ସମାଧାନକୁ
ଲିଭାଇ ଦେ'ରେ ପ୍ରତ୍ୟକ୍ଷ ଗୋଚରକୁ
ଅକର୍ତ୍ତା ତୁ, ଅକର୍ତ୍ତା ବି ମୁଁ ।

ଋଣାନୁବନ୍ଧନର ସୂତ୍ରକୁ ଛିନ୍ନକରି, ସଂପର୍କର ସୂକ୍ଷ୍ମ ଯୋଗସୂତ୍ରଟି ଶତଛିନ୍ନ ହୋଇଗଲେ କେବଳ ଲୁହ ହିଁ ଲୁହ। ପ୍ରତିଟି ଲୁହ ବିନ୍ଦୁରେ ଅଭିଷିକ୍ତ ହୁଏ ଶବ୍ଦ । ରକ୍ତରେ ପଖଳା ହୁଏ ଭାବ । ଛାତିଚିରି ଉର୍ଦ୍ଧ୍ୱକୁ ଉଠେ ଦୀର୍ଘ ନିଶ୍ୱାସ। ଅପୂର୍ଣ୍ଣ ଉପଲବ୍ଧିର ଅମୋକ୍ଷ ଜୀବନର ସଂହିତାକୁ ଆବୃତ୍ତିକରେ ଯେଉଁ ପଦ ତାହାହିଁ ତତ୍ପଦ, ତାହାହିଁ ମହାକାଳର ଅଭିଲେଖ, ତାହାହିଁ ଅବ୍ୟକ୍ତ ନିଃଶବ୍ଦତା, ତାହା ହିଁ କବିତା । ଅଜସ୍ର ସମୟ ବ୍ୟବଧାନରେ ଏମିତି କଷ୍ଟଲବ୍ଧ କବିତାଟିଏ ଉତୁରେ ଗୋଟିଏ ଭାଷା ଭାଗ୍ୟରେ । 'ବୋଧିସତ୍ତ୍ୱ' ଏମିତି ଏକ କାଳୋତ୍ତୀର୍ଣ୍ଣ କବିତା । କବି କ୍ରୁଶବିଦ୍ଧ ହେଲେ ଝରିପଡେ ଯେଉଁ କରୁଣାର ଲହୁ ତାହାହିଁ ଏହି କବିତାର ମହୁ ।

ଦୁଃଖ, ଯନ୍ତ୍ରଣା, ଜୀବନର ଅନିଭୋଗ, ପ୍ରେମ, ପ୍ରମେୟ, ବିଭୋର ସମୟ ଠାରୁ ଆରମ୍ଭକରି ଆଧ୍ୟାତ୍ମିକ ମୋକ୍ଷର ପରମ ବିନ୍ଦୁକୁ ସ୍ପର୍ଶ କରିବାର ଅମୃତ ଭୋଗ ହିଁ ନକୁଳ ଚନ୍ଦ୍ରଙ୍କ କବିତା । ଦୁଃଖର ନାଭିଛେଦନ ପରେ ହିଁ ବ୍ରହ୍ମ ଅମୃତର ଭୋଗ । ସମସ୍ତ ଅଭୁକ୍ତା ପକ୍ଷୀ ଭୋଜନ ନ କରିବି ଭୋଜନର ସୁଖ ଉପଲବ୍ଧି କରୁଛନ୍ତି । ନକୁଳ ଚନ୍ଦ୍ରଙ୍କ ପ୍ରତିଟି କବିତା ସରସ ପ୍ରବୃତ୍ତିର ସଜଳ ସହାବସ୍ଥାନ ଭିତରେ ନିବୃତ୍ତିର ପଥ ପରିଷ୍କାର କରେ । ଜୀବନର କୁତ୍ସିତ ପଥରୁ ନିର୍ବାଣର ପ୍ରେମମୟ ରଥକୁ କରେ ଆରୋହଣ । ଅସ୍ତିତ୍ୱର ଶ୍ୱେତ କପୋତ ଜୀବନ ଭିତ୍ତିର ନୀଳହଂସ । ଆଧ୍ୟାତ୍ମିକ ଶୁଦ୍ଧ ସରୋବରରେ ନିତ୍ୟ ସନ୍ତରଣରତ । ସେ ଶୂନ୍ୟା, ସେ ଭୂମା ସେ ପରମା । ସେହି ମୁହୂର୍ତ୍ତର ପ୍ରେରଣା ଶବ୍ଦର ଅବତାର । ସନ୍ଧିକ୍ଷଣର ମୋହିନୀ ହାତରେ ଅମୃତ କଳଶ, ପ୍ରାଣ ଭୂମିରେ ଦର୍ଶନ କରୁଛି କୃଷ୍ଣ ଓ କାଳୀଙ୍କୁ । ଆଲୋକିତ ଅମାବାସ୍ୟାରେ ଯୋଗାଚାର୍ଯ୍ୟ ସିଦ୍ଧଙ୍କ ନୈରାତ୍ମା ସହ ମିଳନ, ଇଡ଼ା ଓ ପିଙ୍ଗଳାର ଊର୍ଦ୍ଧ୍ୱାୟନ । ସ୍ତବ୍ଧ ବୟସ, ଋତୁମାସ ଓ ଆୟୁଷ । ଚୈତନ୍ୟର ସମସ୍ତ ଦ୍ୱାରଦେଇ ଜୀବନ ଦେଖୁଛି ମହାକାଳକୁ । ନକୁଳ ଚନ୍ଦ୍ରଙ୍କ ପ୍ରତିଟି କବିତା, ପ୍ରତିଟି ଶବ୍ଦ ପ୍ରତିଟି ପଂକ୍ତି ଯେମିତି ପ୍ରାଣବନ୍ତ ଏକ ବର୍ଣ୍ଣିଳ ଚିଠି, ସନାତନ ଅଦୃଶ୍ୟ କାଳିରେ ଲେଖିଛି ।

ବାକ୍‌ମୟୀର ପ୍ରତିଟି କବିତା ଅନୁଭବ ଯୋଗ୍ୟ, ହୃଦ୍ୟ ଓ ମମତା ମେଦୁର । ଚିପୁଡିଦେଲେ ବୋହିପଡେ ପ୍ରାଣରସ।

"ଶବ୍ଦ ନାଚୁଛି ତାଣ୍ଡବ । ଅର୍ଥଟି ମୋହିନୀ / ମା' ରାଧାରାଣୀ, ତୁମେ / ପରଷୁଛ ପ୍ରେମ, ପ୍ରେମ କେବଳ ଉଜାଣି ।" (ବାକ୍‌ମୟୀ - ପୃ-୧୨୦) ।

### ଭାରତୀୟ ପ୍ରାଚୀନ ସଂସ୍କୃତି : ଅଂଶୁପାର ପକ୍ଷୀ

ନକୁଳ ଚନ୍ଦ୍ରଙ୍କ ସଦ୍ୟତମ କାବ୍ୟିକ ପ୍ରୟାସ ଅଂଶୁପାର ପକ୍ଷୀ (୨୦୨୦) ଚବିଶିଟି କବିତାର ସମାବେଶ ଯେତିକି ଆହ୍ଲାଦକର ସେତିକି କଳା ସୌଷ୍ଠବ ମଣ୍ଡିତ । ଭାରତୀୟ ପ୍ରାଚୀନ ସଂସ୍କୃତିରେ ପକ୍ଷୀର ସମ୍ମାନକୁ ଅଂଶୁପାର ପକ୍ଷୀରେ ପ୍ରୟୋଗ କରିଛନ୍ତି କବି । ଏଠାରେ ପକ୍ଷୀ ହିଁ ପ୍ରଶ୍ନ ପକ୍ଷୀ ହିଁ ଉତ୍ତର । ପ୍ରକୃତିର ସୁଷମା ମଣ୍ଡିତ ମଣ୍ଡପରୁ ଉଡ଼ିଯାଉଥିବା ପକ୍ଷୀଟିର ପ୍ରଶ୍ନିଳ ସଂହତି ପ୍ରବ୍ରଜ୍ୟାରେ ଫେରୁଥିବା ପକ୍ଷୀ ଦଂପତିର ଉଡ଼ାଣରେ ଉତ୍ତର ଭାବରେ ଫେରିଆସେ ମୂଳ ଭୂମିକୁ । ଭୂମି ଏଠାରେ ଅଂଶୁପା, ପ୍ରଶ୍ନକର୍ତ୍ତା ନିଜେ ହିଁ କବି ।

ପକ୍ଷୀପଂକ୍ତି ଉଡ଼ିଯାଉଛନ୍ତି
କେଉଁଠାକୁ
ପଥର ଉପରେ ବସି ଜୀବନ ଅନେଇଚି
କାହାକୁ ? (ଅଂଶୁପାର ପକ୍ଷୀ)

ଏହି ପ୍ରଶ୍ନର ଗୁଞ୍ଜରଣ ପ୍ରକୃତିରୁ ଉଦ୍‌ଭୁତ ହୋଇ କବିଙ୍କ ଚେତନାକୁ ଆକ୍ରାନ୍ତ କରେ ତେଣୁ କବି ସ୍ୱୀକାର କରନ୍ତି- "ରୂପସୀ ଅଂଶୁପା ପକ୍ଷୀଙ୍କ ମା ! ଚଳିତ ବର୍ଷ ପ୍ରକାଶିତ "ବାର୍ଡସ୍ ଅଫ ଅଂଶୁପା" ବହି ଖଣ୍ଡିକ ଯେତେବେଳେ ମୋ ଦୃଷ୍ଟିକୁ ଆସିଲା ଏକ ଅଚିହ୍ନା ପୁଲକର ଧାରା ମୋ ପ୍ରାଣ ଭିତରୁ ଫୁଟି ଉଚ୍ଛୁଳି ପଡ଼ିଲା ! ପକ୍ଷୀ ; ଏମାନେ ଅଂଶୁପାର ନୁହନ୍ତି । ମୋ ନିଜ ପ୍ରାଣ ଉପବନ କୁଂଜର ସଂଗୀତ ଶିଳ୍ପୀ ।

ଅଂଶୁପାର ପକ୍ଷୀ କବିଙ୍କ ନିଜସ୍ୱ ଆତ୍ମାର ବିଳାପ । ପକ୍ଷୀ ତାଙ୍କର ପ୍ରେମ, ପକ୍ଷୀ ତାଙ୍କର ଦୁଃଖ ପକ୍ଷୀ ତାଙ୍କର ଜୀବନ । ତେଣୁ ତ ନକୁଳ ଚନ୍ଦ୍ର ଙ୍କ ଶବ୍‌ଦ ପ୍ରେମର ମୁଲାୟମ ସ୍ପର୍ଶରେ ଢ଼ଳଢ଼ଳ

ଧାନ ରଙ୍ଗର ପକ୍ଷୀଟିଏ
ଉଡ଼ି ଆସିଛି କେଉଁଠୁ
ମିଥୁନ ମଗ୍ନା ଲଗ୍ନା ଏଇ ଜଳରାଶିକୁ
ସଙ୍ଗ ପ୍ରିୟ ହେବାକୁ !! (କବିତା-ପାଞ୍ଚ)

କବିତା 'ଛଅ'  ରେ କବିଙ୍କ ସ୍ୱୀକୃତି ଆହୁରି ରସସିକ୍ତ ଓ ପ୍ରାଣବନ୍ତ:

ଏକ୍ଲା ସମୟ କହୁଚି
ସେ ପ୍ରେମ କଥା ! ତମ ଓ ମୋ
ହୃଦୟଙ୍ଗମର ଥେସିସ୍
ଅଂଶୁପାର ପକ୍ଷୀ ଏଠି ଲେଖୁଚି ।

ପ୍ରେମ କେବଳ ପକ୍ଷୀନୁହେଁ ପକ୍ଷୀ ମଧ୍ୟ ଧର୍ମ ଏଘଟେ ଜଗନ୍ନାଥ ଅଛି / ପ୍ରାଣଟି ବି ଗୋଟେ ଅଂଶୁପାର ପକ୍ଷୀ । ସେମାନେ ହାର୍ଟ ଅଫ ଡାର୍କନେସ୍‌ର କବିତା, ଆଣ୍ଟିକ୍ୟୁଟିର ଚୁମୁକି ଲଗା ମୁକୁଟ, କାଳିଦାସଙ୍କ ଶକୁନ୍ତଳା, ଜନ୍ମ ଓ ମୃତ୍ୟୁ ମଧ୍ୟର ଝୁଲନ୍ତା ଜୀବନ ।

ପକ୍ଷୀ ସହିତ ଆକାଶରେ ଉଡାଣ ରଚିଛନ୍ତି କବି । କାଳିଦାସଙ୍କ ଠାରୁ ୱାର୍ଡସ୍‌ୱାର୍ଥ, ସେଲି ଦେଇ ଗିରିଜାକୁମାରଙ୍କ କବିତାର ସାକ୍ଷୀ କରିଛନ୍ତି ପକ୍ଷୀକୁ । ଜୀବନ ଠାରୁ ଜୀବନ ଭୋଗିବାର ଆର୍ତ୍ତନାଦକୁ ଅଲଗା କରିନାହାନ୍ତି ବରଂ ଆକାଶର ଆକାଶକୁ ଅନୁଭବ ପରି ପରିବ୍ୟାପ୍ତ କରିଛନ୍ତି । ପକ୍ଷୀର ଧ୍ୱନି ଓଁକାର ପରି ଆକାଶକୁ ସମାହିତ କରୁଛି । ସତ୍ୟ ଓ କଳିର ସଂଯୋଗ

ସେତୁ ସେମାନଙ୍କ କାକଳୀ, ଫୁଟା ପଦ୍ମର ବାସ୍ନାରେ ଆନନ୍ଦ ଚହଟୁଛି । ଆନନ୍ଦତ ତୁମ ବିଶ୍ୱଲୀଳା । ତାର ସୂକ୍ଷ୍ମତମ ସାକ୍ଷୀ ଅଂଶୁପାର ପକ୍ଷୀ ।

**ଯା'ତୋ କୈଳାସକୁ ଫେରିଯା :**

ନକୁଳ ଚନ୍ଦ୍ରଙ୍କ କାବ୍ୟ କୌଶଳ ଭାରତୀୟ ଚିନ୍ତନରେ ମୁଖରିତ । ତାଙ୍କର ସର୍ଜ୍ଜନା ଅନ୍ତର୍ନିହିତ ମାନସିକ କଳ୍ପନା, ସୂକ୍ଷ୍ମାନୁଭବର ଉଲଗ୍ନ ଶିବ ତାଙ୍କର ଶବ୍ଦ । ସେ ନାଚୁଥାଏ ତାଣ୍ଡବ ତ ସୃଷ୍ଟି ହୁଏ ସମୃଦ୍ଧ । ବ୍ୟକ୍ତିଗତ ଭାବନା ସବୁକୁ ପ୍ରଜ୍ଞାର କଷଟିରେ ପରଖି ସର୍ବଜନୀନ ଆବେଦନ କ୍ଷମ କରିବାବେଳେ ମୁହୂର୍ତ୍ତର ଆବେଗ ଶବ୍ଦ ରୂପ ନିଏ । ଭୋଗିଥିବା ସମୟର ସନ୍ତୁଳିତ ପ୍ରବାହ ଆତ୍ମାକୁ ଅବଗାହନ କରି ଶିତଳ କରେ । ତେଣୁ ପ୍ରତିଟି ପଂକ୍ତି ଜୀବନ ରସରେ ସିକ୍ତ, ଇନ୍ଦ୍ରିୟଗାହ୍ୟ ଓ ସୁଖଦ । ଏବଂ ପୁନରପି ସଂକଳନରେ ଯେଉଁ ସ୍ୱପ୍ନ ଦେଖିବା ସେ ଆରମ୍ଭ କରିଥିଲେ ତାହା କୃଶଷ୍ଣ ରତୁ ଓ ଗୋଟିଏ ମିନତିରେ ଜୀବନ ନିଷ୍ଣ ହୋଇଛି । ସେହି ସ୍ୱପ୍ନ ଓ ଜୀବନର ଅପୂର୍ବ ସଂଶ୍ଲେଷର ସୁବର୍ଣ୍ଣମୟୀ ଆଖ୍ୟାୟିକା ବାକ୍‌ମୟୀ । ଅଂଶୁପାର ପକ୍ଷୀରେ କବିଙ୍କ ମଗ୍ନ ଚୈତନ୍ୟ ଆକାଶରେ ଉଡ଼ାଣ ରଚିଛି । ଯାହା ପ୍ରେମ ଓ ଜୀବନର ଧରାବତରଣକୁ କରିଛି ସୁଖ ସଂବେଦୀ ଏବଂ ଉଲଗ୍ନ ଶିବଙ୍କୁ ଶବ୍ଦର ଶୋଭାଯାତ୍ରାରେ ଫେରେଇ ଆଣିଛି କୈଳାସକୁ ।



# ଅଂଶୁପାର ପକ୍ଷୀ

## ଏକ

ପକ୍ଷୀପଂକ୍ତି ଉଡ଼ି ଯାଉଛନ୍ତି,
କେଉଁଠାକୁ;
ପଥର ଉପରେ ବସି ଜୀବନ ଅନେଇଚି,
କାହାକୁ ?

ଆଗରେ
ଅଂଶୁପାର ନୀଳ ଶାଢୀ
ରଜତ ମାଛ ବୁଣିଚି ଧାଡ଼ି ଧାଡ଼ି
କୁଶଳୀ ବାଂଧ ଶିଳ୍ପୀ;
ନିଦର ସମୁଦ୍ରରେ ଗୋଟିଏ ପଦ୍ମ ଫୁଟିଚି
ଶୋଣିତ ପଦ୍ମ
ମୂଳାଧାର ଚକ୍ରର ରଂଗ, ସ୍ୱାଧିଷ୍ଠାନ
ନୀଳଜଳ ନାଚୁଛି, ବିମୋହିନୀ ପ୍ରକୃତି !

ଅମୃତ ପକ୍ଷୀ
ମୃତ୍ୟୁ କ୍ଷୁଧା ତୁମକୁ ଛୁଇଁ ପାରିବନି
ଅତିକ୍ରମ କରୁଛି ସମୟର ରାତ୍ରୀ
କାହାକୁ ଅନେଇଚି ଅରଣ୍ୟର ଘନ ତାରାଟି ?

ଚେତନା ମୋ ଅଂଶୁପାର ପକ୍ଷୀ
ପୁରୁଣା ଦିନର ମୁକୁଟକୁ ଖୋଜୁନି
ପ୍ରେମର ନୂଆ ଦିନ ଚିକ୍‌ଚିକ୍ ହସୁଚି
ଫଣିପ୍ରିୟ କବଚରେ ଭୂସ୍ୱର୍ଗୀୟ ବିନୋଦ ରଚିଛି !

# ଦୁଇ

ଆଖିର ଆଇନା ଉପରୁ ଅୟସ୍କାଂତ ଅନାଇଛି
ସରଂଡାର ଉରୁବସି ଉର୍ବଶୀର ଉରଜମାନଙ୍କୁ
ଶ୍ୟାମଳୀ ଯୌବନର ସ୍ୱପ୍ନିଳ ସୁବାସକୁ
ଭ୍ରମିତ ଇଛାର ସଂପ୍ରଦାୟ ଗଢୁଥିବା ସୁଖର ମୂର୍ତ୍ତିକୁ !

ଅମୂର୍ତ୍ତିକୁ ମୂର୍ତ୍ତି ଗଢୁଚି କିଏ ଏଠି,
ଭାବସିଂଧୁ ?
ଅନାଦି ରାଜାର ପୁଅ ଏଠି
ଖେଳୁଚି ପାର୍କରେ !

'ଚାଟଢେଇ' ଡାକୁଚି 'ଚାତକ'କୁ
ପୁଅ ଖେଳୁଚି, ଦେଖିବୁ ଆ'
'ହଳଦି ଟେଂଟେଇ'ର ବୃଂଦାବନକୁ
ସୁଷମାର ପୁରୁଣା ପୃଥିବୀ ଏଠି ଆଉ କାହିଁ ?

କି ଗୀତ ଗାଉଛି ଏଠି ସୁଷମାର କପୋତ
ରସିକ ପାଇଁ ରୂପର ରୂପକଳ୍ପ
ନା' ଇଏ କା' ପ୍ରୀତିର ପ୍ରତୀକ;
ସିଂହଳର ରାଜଜେମା କି କରିଛି ପ୍ରେରିତ !!



# ତିନି

ସ୍କସ୍ଚ୍ଚ ଉପଲଛିର ମସୃଣ କୋମଳ ମଂଡା
ଦେବାଳୟପରି ଉଚ୍ଚଉଚ୍ଚ
ସାମୂହିକ ଅହଂକୁ ମଦନ ମାରୁଚି ଚୋଟ
ଯୁବ ଉତ୍ତାପ କି କରୁଛି ବ୍ରହ୍ମ ପ୍ରତ୍ୟକ୍ଷ ?

ପାପୁଲିରେ ପାପୁଲି ଛଂଦାଛଂଦି ହାତ
ଏମାନେ ନବୀନା ଓ ନବ ବୟସ୍କ
ଚାତକ ପକ୍ଷୀପରି ସୁଯୋଗ ପ୍ରତୀକ୍ଷିତ
ଐକାଂତିକ ଆକାଂକ୍ଷାର ଗୋଲାପୀ କପୋତ !

ସମୟର ରାତି ଏଠି
ସୁଖର ଫୁଲଶେଯରେ ମୈଥୁନିତ
ପୁଷ୍ପକୁ ପ୍ରତିଷ୍ଠା ଦେଉଛି ପବନ
ପବନକୁ ପରିବେଶ ବାରଂବାର କରୁଛି ଆଲିଂଗନ !

ସ୍ନାନ କରିବାକୁ
ଇଡ଼େନରୁ ଇଭ୍‌କୁ ଏଠାକୁ ଆଣିଛି ଆଦାମ,
ତେଣୁ ପ୍ରେମଟା ବି ଗୋଟିଏ ପକ୍ଷୀ
ଅଂଶୁପାର ପରିବେଶ ସାରା ନାଚୁଛି କ୍ଲାସିକ୍ !



# ଚାରି

ବିଶ୍ୱାସରେ
ଆଲୋକରେ
ଓ ଚେତନାର ଆକାଶରେ
ଅଂଶୁପାର ପକ୍ଷୀ

ସମୟକୁ ଚିରୁଚି
ଗତି ତା' ଅଗ୍ରଗତି
ଶାଣିତରୁ ଶାଣିତ, ତୀବ୍ର ଅତି
ସଂସ୍କୃତିର ଅଧ୍ୟୟମାନଙ୍କୁ ବ୍ୟାପୁଛି

ସିମା*
ଯେମିତି ଏଇ ଶୀତରେ
ଉତ୍ତର ସାଇବେରିଆରୁ ଫେରିଛି
ଅଂଶୁପା ତା' ବୟସୀ ମା'କୁ
ଦେଖିବାକୁ ଆସିଛି !

ତମେ 'ରାତିବଗ' ଦେଖିଚ
ସଂଗପ୍ରିୟ ପକ୍ଷୀ
ମୋ ହୃଦୟ ତ ଖୋଦିତ ଶିଳାଲେଖ
ଗୋଟିଏ ବାର୍ତ୍ତା ଏଠାରୁ ପ୍ରସାରିତ ହେଉଚି

କାଳକୁ କାଳ ଗୋଟିଏ ସ୍ୱୀକାରର ସ୍ୱର
ମୁଁ ତୁମକୁ ଭଲପାଏ, ପୃଥିବୀ !
ମୁଁ ତୁମକୁ ଭଲପାଏ
ଏବେ ବି ।

*- ସିମା କେନ୍ଦ୍ର ଓ ଉତ୍ତର ପଶ୍ଚିମ
ସାଇବେରିଆରୁ ଅଂଶୁପାକୁ ଆଗତ ପକ୍ଷୀ ।
Calidris mimuta ତା' ବୈଜ୍ଞାନିକ ନାଁ ।

# ପାଞ୍ଚ

ଧାନରଂଗର ପକ୍ଷୀଟିଏ
ଉଡ଼ି ଆସିଛି କେଉଁଠୁ
ମିଥୁନ ମଗ୍ନା ନଗ୍ନା ଏଇ ଜଳରାଶିକୁ
ସଂଗ ପ୍ରିୟ ହେବାକୁ !!

ଏଇଟା କ'ଣ ସେଇ ଉତ୍ତର ଭାରତର ତୀର୍ଥ
ଏହାର ନାମ ସଂଗମ
ଭାରତର ପତାକାପରି ତ୍ରିରଂଗ
ଏହାର ପରିବେଶ ଅଂଶୁପା ବକ୍ଷର ଚାରୁଚିତ୍ର
ଆଂକିଚି କିଏ ଏଇ ଶ୍ରୀଦୃଶ୍ୟ ?

ମଝିରେ ଝଲମଲ କାଶତଂଡି ହସ
ପାଣିର ପଠାରେ ଗୀତ ଗାଏ ସାତ୍ତ୍ୱିକ ଶାଶ୍ୱତ
'ସାନ ଝଲିଆ ବଗ'
'ବଡ ଝଲିଆ' ପରି ଧବଳ ବର୍ଣ୍ଣ ଟେକିଛି ବେକ

ମିନତିର ସରୁ ବେକ ଗୋରା ଚର୍ମ
ମୋଡ଼ି ମୋଡ଼ି ଗୋଟିଗୋଟି ଚୂର୍ଣ୍ଣ କୁଂତଳ
(ଏଡ଼େ ମୁଲାୟମ୍ !)ସମୟର ବଡ଼ ପ୍ଲାଟଫର୍ମ୍
କୁଆଡୁ ଆସି କୁଆଡ଼େ ଯାଏ ସଂଗମ ଜଳ ?

ଜାଣେ କ'ଣ ଏକା ଚୁଇଁ ସିମା*
ଭଲ ପାଇ ପରସ୍ପରକୁ ନ ପାଇବା
ଗୋଟିଏ କଳା; ପ୍ରେମ ତା' ନାଁ
ପାଇଗଲେ ସବୁ ସରିଯାଏ !

ଉତ୍କଂଠାରେ ଠିକଣା
ଲିଭାଯାଏ 'ଜୀବନ' ବଂଚିବାର ନାଁ
ଉତ୍ତର ସାଇବେରିଆ
ଆଉ ଫେରି ଯାଇପାରେ ନାହିଁ
ଚୁଇଁ ସିମା !



*- ଚୁଇଁ ସିମା ଉତ୍ତର ସାଇବେରିଆରୁ ଅଂଶୁପାକୁ ଆସିଥିବା ଗୋଟିଏ ପକ୍ଷୀ ।
'କାଲିଡ୍ରିସ୍ ଟେମ୍ମିନିକ୍' ତା' ବୈଜ୍ଞାନିକ ନାଁ ।

# ଛଅ

ଆକାଶ ବିଶାଳ,
ଅଂଶୁପା
ଆକାଶର ଖଂଡ଼େ ଓଦାରୁମାଲ,
ମୋହର ଅବଲଂବନ
ବାଟ ଓଗାଳୁ ଥିବା ସ୍ମୃତିରେ ବହଳ
ଅନୁରାଗରେ ଏଡ଼େ ନୀଳ ??

ଏ ରୁମାଲକୁ ବୁଣିଛି
ଅଂଶୁପାର ପକ୍ଷୀ
ଏ ରୁମାଲରେ ନିଜ କାହାଣୀ ଲେଖିଚି
ସ୍ୱପ୍ନର ଆଁ !

ଏଲ୍କା ସମୟ କହୁଚି
ସେ ପ୍ରେମ କଥା ! ତମ ଓ ମୋ
ହୃଦୟଙ୍ଗମର ଥେସିସ୍
ଅଂଶୁପାର ପକ୍ଷୀ ଏଠି ଲେଖୁଚି !

ଆୟୁଷର ଆଶା ବରଂ ଲିଭୁଚି
ଅଫେରା ଅତୀତର ଆକାଶରେ
ଶିକୁଳିରେ ବଂଧା ପକ୍ଷୀଟିଏ
ଶବ୍ଦର ଆତ୍ମାକୁ
ଅନଂତ ଓ ଉଦାର କରୁଛି !
ସୌନ୍ଦର୍ଯ୍ୟଟା ବହୁଳ ହେବାରେ ଲାଗିଛି !!

# ସାତ

ପଦ୍ମକଢ ଥଂଟରେ ଛିଂଡେଇ
ଖଂଡଖଂଡ କରି ଖାଇ ଯାଉଥିବା
ଏଇ ପକ୍ଷୀଟି କିଏ ?
ପଦ୍ମ ସହିତ ତା' ଆତ୍ମୀୟତା କି ନଥାଏ !

ନୂଆ କଥାର ଉଦ୍ଭାବନ କରେ ପକ୍ଷୀ
ସିଏ କ'ଣ ନୋବାକୋଭଙ୍କ ନଭେଲ୍
'ଲୋଲିତା' ପଢ଼ିଚି ?
'ଚଢ଼ୁଆ ଗେଂଡ଼ି' ଝାଂପି ନେଲା, କ'ଣ ସେଇଟି ?

'ମୀନ'....!!
କେଶବ ଧୃତ ମୀନ ଶରୀର...
ଆଦ୍ୟାବତାର, ଯଦାଯଦା ହି...
ପରିତ୍ରାଣାୟ ସାଧୂନାମ୍ ...
'ଘଟରେ ବ୍ରହ୍ମଂକୁ ନ ଚିହ୍ନି
ବାହ୍ୟଷରେ ଭ୍ରମୁଥାଂତି ପୁଣି' ! ସବୁ ଏଇଠି
.... 'ଏ ଘଟେ ଜଗନ୍ନାଥ ଅଛି',
ପ୍ରାଣଟି ବି ଗୋଟେ ଅଂଶୁପାର ପକ୍ଷୀ !



ଧୀର ସମୀର ଅଂଶୁପା କୂଳ
ପତଳା ସୌର ତାପ ଦୁକୁଳ
କାମ ବି ଗୋଟିଏ ମୀନ, ଝସ କେତନ !
ତରୁ ତରୁଣୀ ଛାଇ ତଳେ ନେଇଛି ବିଶ୍ରାମ;
ୱାଚ୍ ଟାୱାରରୁ ଦିଶୁଚି ମହିମାର ଦୃଶ୍ୟ
ସୁଷମାର ଉନ୍ମୁକ୍ତ କେଶ
ଦିଗ୍‌ବଳୟ ପକ୍ଷୀଙ୍କ ଆଳୟ
ପୃଥିବୀର ସଂପତ୍ତି, ବନାନୀକୁ ଆଶ୍ଳେଷିଚି !

ବିଦ୍ୟମାନ ସବୁଜ ଯୁବତୀ ମା' ମାତଂଗୀର
ଧ୍ୟାନରତ ମୂର୍ତ୍ତି !
ସବୁଜ ପଂକୁରୀର ବଳୟରେ
ସତ୍ୟ ପକ୍ଷୀକୁ ସେ ଆଶ୍ରୟ ଦେଇଛନ୍ତି !!

# ଆଠ

ଫିଙ୍ଗିକ ଗଛରେ ଲାଗିଛି କୁହୁଡ଼ିର ଟୁକୁଡା
ଯେମିତି ଛୋଟ ତୁଳାର ଗୋଟିଏ ଗୋଟିଏ ଗୁଳା
କଂଟାକୁ ଛୁଇଁଚି ଶୀତର ଟିପ
ମନେ ପକାଉଛି ଫୁଲ ମାନଙ୍କ ନାମ ?

କବି ଗିରିଜା ଥରେ କହିଲେ, ତାଂକ ଆକାଶରେ
ଅନେକ ଜହ୍ନ !
ଅଂଶୁପା ପାଖରେ ଠିକ୍ ସେମିତି ଅନେକ
interrogation ! ଅନେକ ପକ୍ଷୀଙ୍କ ଡେଣା

ସେମାନେ ସୌନ୍ଦର୍ଯ୍ୟ ପ୍ରଶ୍ନ ବୁଣଂତି
ବୁଣଂତି ଉଦୟ ଓ ଅସ୍ତର ଗାଲିଚା
ହାର୍ଟ ଅଫ୍ ଡାର୍କନେସ୍‌ରେ
ଶୂନ୍ୟତା ହିଁ ଯାଇତି ଆଏ ସ୍ଥିରତା !

ହଁ, ଯେତେବେଳେ ଆଲୋକ ବିଛେଇ ହୋଇପଡ଼େ
ଶୀତ ଋତୁର ଅପରାହ୍ଣରେ
ଅଂଶୁପାର ନୀଳସ୍ୱେଟରରେ, ଅନ୍ୟମାନଙ୍କ ଠାରୁ ଅଲଗା
ଗୋଟିଏ ସୁଷମାର ମଂଦିର, ଏବେ ଇତିହାସ !

ପର୍ଯ୍ୟଟନର ସୁକୋମଳ ସ୍ମିତ
ଭୂମି, ପାଣି, ପବନ, ଗଛ ଓ ଫୁଲଙ୍କୁ କରିଛି ହାତ
ଶେଷ ଋତୁର ଫଳକୁ ଏଠି ଆହାର କରେ ଆଖି
ତମେ ମତେ ଆଉ ମନେ ପକାଇ ପାରିବନି !

ତମେ ତ ଏଇ ଅଂଶୁପାର ପକ୍ଷୀ !
'ପକ୍ଷୀ' ଏକ ପ୍ରିୟ ଶବ୍ଦ
ସମୟ ତାକୁ 'Familiar' କରି ଦେଇଛି
ମାନବୀୟ ସାମର୍ଥ୍ୟ କାହିଁ ତାକୁ ପାରିବ ପୋଛି ?



# ନଅ

ଟଲୁ
ୱାଚ ଟାୱାର ଉପରକୁ
ଲଂଵିଛି
ଲୁହାର ଗୋଲେଇ ଶିଡ଼ି

ୱାଚ୍ ଟାୱାର୍ ଉପରୁ ଅନାଇଲେ
ଦିଶୁଚି ଦୁଇଟି ବୃହତ୍ ପକ୍ଷୀ
ଅଂଶୁପାର ଆକାଶରେ
ଡେଣା ମେଲାଇ ନାଚୁଛଂତି !

ଗୋଟିଏ ଜନ୍ମ ତ ଅନ୍ୟଟି ମୃତ୍ୟୁ
ମା' ଦୁଇଟି
ମାତ୍ର ପୁଅ ଗୋଟିଏ - ଜୀବନ
'ଜୀବନ' ଏଇ ବଂଚିବାର ଫୁଲ !

'ଜୀବନ ପାତ୍ର ମୋ
ଭରିଛ କେ କେତେମତେ ...
ନ ଦେଲ ବୋଲି କିଛି କହିବି କି
ଆଉ;
ତରଣୀ ମୋର
ତବ ସାଗରେ ବହି ଯାଉ' !

ହେ ଅନଂତ,
ଅଂଶୁପାର ନୀଳ ଚିତ୍ର, ସ୍ମୃତିର ଆଲେଖ୍ୟ
ଅବତାରର ନିଜ ରୂପ
ଶୂନ୍ୟତାର କଳାପଟାରେ
ପୂର୍ଣ୍ଣତାର କେଉଁଚିତ୍ର ଯେ ନ ଚିତ୍ରିଛ ?

ଅଦୃଶ୍ୟର ଦୃଶ୍ୟ ପକ୍ଷୀକୁ କରିଛି ମୋହିତ
ଧନ୍ୟ ହୋଇଛି ବୁଂଦାଏ ରକ୍ତ ଫୁଟେ ମାଉଁସ ।

# ଦଶ

ଯୋଡ଼ି ଯୋଡ଼ି ଲାଲ ଥଂଟ
'ରଂଗ ଗେଂଡ଼ି'
ପାଣି ଭିତରେ କ'ଣ ଖୋଜୁଛନ୍ତି
ମାଛ ? ସେମାନଂକ ପ୍ରିୟ ଖାଦ୍ୟ

ହେ, ନାଇ - ନାଇଁ
ସେମାନେ ଖୋଜୁଛନ୍ତି ପ୍ରଣୟ
ଇଡ଼େନ୍‌ରୁ ଆସିଥିବା ଗୋଲାପୀ ରଂଗର ପକ୍ଷୀକୁ
'ହଂସରାଳୀ' ଦଳ ଅଂଶୁପାରେ ଦେଖିଛନ୍ତି ତାକୁ

ହଂସରାଳୀ; ସ୍ୟାହି ରଂଗର ଥଂଟ
'ରାତିବଗ'ର ଉପର ଥଂଟଟା ବି ନୀଳ
ନୀଳ ସ୍ୟାହିର ଦୁଆତରେ ଥଂଟ ବୁଡ଼ାଇ
ଲେଖିଛନ୍ତି ବୌଦର ଧଳା କାଗଜରେ ଗୀତ ?

ବୁଢା ଶେଲୀଙ୍କ ପରି ଅନେଇଚି 'ରଣପା ଚଢେଇ'
କାହିଁକି ଏଇ ପକ୍ଷୀମାନେ ଗୀତ ଗାଉଛଂତି;
ନଦୀ ବୋହି ଆସୁଛି କାହିଁକି କେଜାଣି
ହସକୁରୀ ପଦ୍ମିନୀକୁ ଭ୍ରମର ଚୁମି ଯାଉଛନ୍ତି !!

ସୁଖୀତମ ମନ ଓ ମୁହୂର୍ତ୍ତର ଲିପିବଦ୍ଧ ଅବସ୍ଥା
ଶ୍ରେଷ୍ଠ କବିତା, ସ୍ୱତଃ ନିମ୍ନ ପ୍ରାଣରୁ ହୁଏ ମୁକୁଳିତ
ତାକୁ ଧରି ରଖେ ଶବ୍ଦର ପାତ୍ର
ଜ୍ଞାନର ଜଳ ଓ ଆନନ୍ଦର ଆସ୍ତରଣ, କବିତାର ନିର୍ଝର
ଚିରକାଳ !

ପକ୍ଷୀମାନଙ୍କ ଓଠରେ କାକଳୀ ହୋଇଯାଇଛି ପବିତ୍ର
ଯେମିତି ପ୍ରେମର ମୂର୍ତ୍ତିଟି ଚିର ଆରାଧିତ
ମାନବିକତା ଓ ଅଭିବ୍ୟକ୍ତି ହୋଇ ଗଲାଣି ଆଂଟିକ୍ୟୁଟୀ
ମାତ୍ର ପ୍ରେମ ସବୁବେଳେ ନୂଆ ଚିକ୍‌ଚିକ୍
ଚୁମ୍‌କି ଲଗା ମୁକୁଟଟିଏ ଯେମିତି !
କାଳିଦାସଙ୍କ ସୁକୁଂତଳା ଶକୁଂତଳା ଜାଣିଛି !





# ଏଗାର

ଓଁ... ଓଁ... ଓଁ....
ଓଉ ଗଛ ଗାରି ଗାରିଆ ପତ୍ରଙ୍କ ଚଦର ଭିତରୁ
ଇଏ କେଉଁ ପକ୍ଷୀ
ତା' ପ୍ରାଣର ବୀଣା ତାରରେ ଦେଉଛି ତାଉ ?

ମାଛରଂକାର ଲାଲ ଥଂଟ
ଡେଣା ପଛକୁ ଫିକା ସ୍ୟାହି ରଂଗ
ପେଟଟା ଖଇରିଆ ବେକ ତଳ ଧଳା
ମାଛରଂକା ପରି ପ୍ରେମଟା ବି ଲଂଗଳା ?

ମୁନିଆ କଳା ଲଂବ ଥଂଟ ମାଛରଂକା
ବୁଢ଼ା କିଂଗ ଫିସର୍
କିଂତୁ ଇଲିୟଟ ଭେଟିଥିଲେ ୱେଷ୍ଟଲ୍ୟାଂଡରେ
'ଫିସର୍ କିଂଗ୍'କୁ !

ହ୍ୱାଟସ୍ ଅପରେ ବୁଢ଼ା ହ୍ରଦର ଦହ
ଭବାନୀପାଟଣାକୁ ପଠାଇଛି ମାଛ ରଂକାର
ଗୋଟିଏ ଲଂଗଳା ଥଂଟ
ତାକୁ ଦେଖି ଦେଇଛି ଜଂଗିଲା ବଗ !

ଛୋଟ ଗଂଗୋଇ ପରି ଖସି ଗଲେ ବି
କାଂଦୁଚି କାମ ଚଢେଇ
ତମେ ମତେ ଭୁଲ ବୁଝନି, ଯୁଇ କଇମା
ରାଣୀ କେବେ ଦାସୀ ପୁତ୍ରର ହୁଏନା !

ତୁ ତ ଗୋଟିଏ ଧୂସର ବଗ
ବଡ଼ ଝାଲିଆ ଆକାଶର ଚଂଦ୍ର
ସାତକୋଡି ଟଂକାରେ ତୁ ଚଳାଇବୁ ନବପର୍ବ
ଆଉ କେତେ ଦିନରେ ପାଣିକୁଆ ?

ଜୀବନ ଉଦ୍ଦେଶ୍ୟ ଭୁଲିଚି ବୁଢାଚିଲ
ତା'ସବୁ ପୁରସ୍କାର ଉପରେ ପରିସ୍ରା କରିବାକୁ







ମନା କଲା ଛଂଚାଣ
କାରଣ ? ସେ ଗୋଟାଏ ଚରିତ୍ରହୀନ !
ଓଁରୁ ଆଇଁଷ
ସୋସିଆଲ୍ ସଂସ୍କୃତି, 'ଆଇଁଷ ପାଟ'ରୁ
'ଅଂଶୁପା' ଅପଭ୍ରଂଶ ହୋଇଚି
ରୂପର ରୂପକଳ୍ପ, ସୌନ୍ଦର୍ଯ୍ୟର ନିଜ ଚିତ୍ର !

ହି ହୁ ୱାଜ୍ ଲଭିଂଇଜ୍ ନାଓ ଡେଡ୍',
ଇଲିୟଟ ଲେଖିଛଂତି,
ଟିକିଏ ଥୟ ହୁଅ, ଧୈର୍ଯ୍ୟ ରଖ, ପୁଅ !
'ଇନ୍‌ଡ଼ୀଡ୍ ଦେୟାର ଉଇଲ୍ ବି ଟାଇମ୍'

ଘୃଣାର ପକ୍ଷୀ
ତୁମ ପିଛା ମୋତେ ଛାଡିବନି
ଟଂକା ଦେଇ ଆଇନ୍‌ର ମୁହଁକୁ ସଫା କରିଦେବ ?
କିଂତୁ ଗଣ ମନକୁ ?
ଚିପ୍, ଯେତେ ପାରୁ ଚିପ
ମିଡିଆର ବେକ
ସେମାନେ ବୁଝି ପାରିବେନି
ତୁମ ଗଳା ବାଟକୁ, ସମକାଳର ଅସହାୟତାକୁ !

ଯେଉଁ ଦେଶରେ ସୀତା ହୁଏ ଦୂଷିତା
ସେଠାରେ ଛାର ଏଇ ଅଂଶୁପା !

'ପ୍ରଦୂଷଣ'
ଚଳିତ ଶତକ ସର୍ବ ଶ୍ରେଷ୍ଠ ଡିଜାଇନର ଚିହ୍ନ
ଲୋକ ହୁଅଂତୁ ଯେତେନା ଯେତେ ସଚେତନ
ଜୀବନ ଶୈଳୀର କଳାପଟାରୁ
ଲିଭାଇ ହେବ ନାଇଁ ତା' ଆକର୍ଷଣ !



# ବାର

ପୁରୁଷ ଗେଂଡାଳିଆ ହୁଂକାର କରୁଛି
ଜ୍ଞାପୟତେ ସ ପ୍ରସ୍ତାବଃ
ସ୍ତ୍ରୀ ସହିତ ଯିଏ ଶୟନ କରିଛି ସିଏ ଉଦ୍‌ଗୀଥ
ମିଥୁନରେ ଓତ-ପ୍ରୋତ...!

ଇଚ୍ ଅଦର୍ କିଲିଂ ଟୁ ଇଚ୍ ଅଦର୍
ବ୍ରହ୍ମବର୍ଚସ୍ୟନ୍ନାଦୋ, ବ୍ରହ୍ମ ତେଜ ସଂପନ୍ନ
ଅନ୍ନର ଭୋକ୍ତା
ପକ୍ଷୀ ଭୋଜନ କରୁଛି ଉଜ୍ଜ୍ୱଳ ଜୀବନ !

ଅନ୍ନାଦୋ ଦୀପ୍ତାଗ୍ନିଃ
ଯୋଡ଼ା ଯୋଡ଼ି ଦୁଇଟି ଗୁଡ଼ି
କାଳଂ ଗଛତି ମୈଥୁନେନ, ଏତତ୍ ଦିବ୍ୟମ୍
ମିଥୁନାନ୍ ମିଥୁନାତ୍ ପ୍ରଜାୟତେ !

ଉଦିତ ପ୍ରସ୍ତାବ
ଯେଉଁ ପୁରୁଷ ବୃହତ୍ ସାମକୁ ସୂର୍ଯ୍ୟରେ ସ୍ଥିତ
ଜାଣଂତି
ସିଏ ମହାନ୍ କର୍ତ୍ତା ହୁଅଂତି !

ଉଦ୍‌ଗୀଥ ବର୍ଷୁଚି, ପ୍ରାଣାୟ ସ୍ୱାହା,
ଦ୍ୱାର ଖୋଲା ରଖିଚି ପକ୍ଷିଣୀ
ଯୋ ବୈ ସୋଽନ୍ତଃ ପୁରୁଷ ଆକାଶଃ
ଚୁପୁଡ଼ି ହୋଇ ଆମ୍ବରୁ ତା' କ୍ଷରୁଚି ଅମୃତ !

ଶକ୍ତି ପରିବେଷ୍ଟିତ ଲିଂଗ
ଆକାଶର ଆକାଶକୁ ଅନୁଭବ ! ପ୍ରେମ !



# ଡେର

ଜୀବନକୁ କିଏ କଂଦାଏ ?
ଇଲିୟଟ କହିଲେ, ପ୍ରେମ !
ପୁରୁଷକୁ ନ ପାଇବା ଦୁଃଖ,
କହିଥିଲା ରାମାୟଣର କ୍ରୌଂଚୀ !

ଘୋଟି ଆସିଲେ ରାତ୍ରୀର ଅଂଧାର
ଗୋଟିଏ କୂଳରେ ବସି ନାଇଟେଂଗେଲ୍ ପକ୍ଷୀଟିପରି
ଅଂଶୁପାରେ କାଂନ୍ଦୁଚି କ୍ରୌଂଚୀ
ମୋ ପାଇଁ ସତେରେ କ'ଣ ଥରୁଟିଏ
ନଦୀ ଗଂଜଗୋଇ କାଂଦିଛି ?

ଦଂଗୁଆ କହୁଛି ଲଂବ ଲାଂଜି କାଳି ଚଢେଇକୁ
ପଚାରିବି : କାନି ତାନି ?
'ଅଂଡଜମେବାଂଡଜଂ ପକ୍ଷାଦି... ଜୀବାବିଷ୍ଠାନମ୍'
ସତ୍ ଇକ୍ଷଣ କରିଚି

ସତ୍ୟମେବ ନ ଯୁକ୍ତମ୍
ସଂଯୁକ୍ତ ପକ୍ଷୀ ଅଂଡା ଦିଏ କେଉଁଠି
ଭାସମାନ ଦଳରେ, ଜଳରେ
ନା' ପାଦପର ଡାଳରେ ?

ଚାରିଆଡ଼ ତ ସବୁଜ ଛାମୁଂଡିଆ
ବନ ମର୍ମର
ସବୁଜପରୀ
ଉଡାଇଛି ତା' ବାଦଲର କାନି !



# ଚଉଦ

ସ୍କୁଲ ଇନ୍ସପେକ୍ଟର ରାଧାନାଥ ରାୟ
ଆସିଥିଲେ ସୁବର୍ଣ୍ଣପୁର
ପୁରୁଣା ସ୍କୁଲ
ଇନ୍ସପେକ୍ସନ ବେଳେ ଦେଖିଥିଲେ ଅଂଶୁପାକୁ

'ଚିଲିକା' ଲେଖିଲା ବେଳେ
ବିଷାଦରେ କଳା କରିଥିଲେ କାଳିକୁ
ଇଏ କ'ଣ ତାଂକ ସେଇ ଲେଡି ଅଫ୍ ଲେକ୍ ?
ନା' ତ ! ମିନାପରି ଇଏ ଥିଲା ତାଂକ ମାନସୀ

ସ୍କଟଙ୍କୁ କେବଳ ଜାଣଂତି ତୁଂଗ ଶିକ୍ଷିତ
ରାଧାନାଥଙ୍କ ପଦ ଅଂକନ ପରେ
ପାଦଥାପି ରଚିଛଂତି ତାଂକ ଆଲେଖ୍ୟ
ଲିଭି ଯାଉଥିବା ବେଳେ ତାକୁ ସୁରକ୍ଷା ଦେଲେ ଫଣୀଂଦ୍ର !

ଏବେ ପକ୍ଷୀଂକ ପାଳି
ଅଂଶୁପାର ପକ୍ଷୀ ପ୍ରେମ ପକ୍ଷୀ
ଅଂଶୁପାର ପକ୍ଷୀ ପ୍ରକୃତିର ପ୍ରାଣ ପକ୍ଷୀ
ଅଂଶୁପାର ପକ୍ଷୀ ବଶିଷ୍ଠଂକ ବାକ୍ ପକ୍ଷୀ
ବେଦର ଡାଳରୁ ଜଳ ଉପରକୁ ଉଡ଼ି ଆସିଛଂତି
ସେମାନେ ପୃଥିବୀର ସଂପତ୍ତି !

- 'ଫଣୀଂଦ୍ର' - ଡ. ଫଣୀଂଦ୍ର ଭୂଷଣ ନଂଦ, ଗବେଷକ, 'ଅଂଶୁପା'ର ସହକାରୀ ବନ ସଂରକ୍ଷକ ।



# ପନ୍ଦର

ଅଂଶୁପାର ଆକାଶରେ
ଉଦ୍‌ଗୀଥର ଉପାସନା କରୁଛଂତି ପକ୍ଷୀ
ସେମାନଂକ ଧ୍ୱନି : ଓଁ, ଓଁ, ଓଁ...
ଉଦ୍‌ଗାନ !

ଋକ୍‌ର ସ୍ୱନ
ସୃଷ୍ଟିର ଆତ୍ମାରେ କରୁଛି ଅନୁପ୍ରବେଶ
ଋକ୍ ପ୍ରାପ୍ତି ପରେ ଶ୍ରଦ୍ଧାରେ
ଚେତନା କରୁଛି ଉଚ୍ଚାରଣ ଅନାହତ ସ୍ୱର !

ସେ ସ୍ୱରର ଦୃଶ୍ୟ ରୂପ ଅକ୍ଷର
ନ-କ୍ଷର
ପ୍ରଦାନ କରୁଛି ଅମୃତ ଓ ଅଭୟ
ଯେଉଁମାନେ ହୋଇଛଂତି ଅକ୍ଷରରେ ପ୍ରବିଷ୍ଟ !
ଯଃ ପ୍ରଣବଃ ସ ଉଦ୍‌ଗୀଥଃ
ଅଂଶୁପା ପକ୍ଷୀର ଗୀତ ।

# ଷୋହଳ

ଅଂଶୁପାର ପକ୍ଷୀ ବୈଶ୍ୱାନର ଆତ୍ମାକୁ କି
ଖୋଜୁଚି ?
ମହାଶାଳାରେ ମହାଗୃହସ୍ଥ ତିର୍ଯ୍ୟକ ବୃଂଦ
ଆଉ କାହିଁକି କଳରବ କରଂତି ?

ସେମାନେ କି
ରମଣୀୟ ଆଚରଣ ଅଭ୍ୟାସୀ
ଉଚ୍ଚ ଯୋନି ପ୍ରାପ୍ତି ପ୍ରଲୋଭିତ ଅଟଂତି,
'ତଦ୍ୟ ଇହ' ?

ନିଜ ପାଶକୁ ଆସିଥିବା ଋଷିବୃଂଦଙ୍କୁ
ଅଲଗା ଅଲଗା ସତ୍କାର କରି
ରାଜା ଅଶ୍ୱପତି କହୁଛଂତି -
ଋତ୍ୱିକଙ୍କୁ ଦେଉଥିବା ଧନର ପରିମାଣ
ଆପଣମାନଙ୍କୁ ମୁଁ ସମସ୍ତଙ୍କୁ ଦେବି !

ମତେ ଭୁଲ ବୁଝଂତୁନି,
'ନ ମେ ସ୍ତେନୋଜନପଦେ ନ କଦର୍ଯ୍ୟୋ
ନ ମଦ୍ୟପୋ ନାନା ହିତାଗ୍ନିର୍ନାବିଦ୍ୱାନ୍ନ
ସ୍ୱୈରୀ ସ୍ୱୈରିଣୀ କୁତୋ' ?
ଏଇ ପକ୍ଷୀମାନେ ଯେମିତି ସତ୍ୟକାମ,
କହୁଛଂତି ସତ୍, ଚିତ୍ ଓ ଆନଂଦକୁ ଜାଣଂତି
ତା' ନ ହେଲେ ସେମାନେ କ'ଣ
କଳି କରୁଛଂତି ?

ସତ୍ୟ ଓ କଳିର ସଂଯୋଗ ସେତୁ କାକଳୀ
ସଂସ୍କୃତିର ସଂଧିକାଳ
ଯୁବତୀ ସମୟର କାଂଧ ଉପରେ ବ୍ରେସିୟରର
ଫିତାପରି ଫୁଟି ଦିଶୁଚି !

# ସତର

କବିତା ଏକ ଉଚ୍ଚାଂଗଶାଦ୍ଧିକ କାକଳୀ
ପ୍ରାଣର ପକ୍ଷୀ ଗାଇଥାଏ
ଇଂଦ୍ରିୟମାନଙ୍କ ପତ୍ର ଗହଳରୁ
ଦେହ ତରୁରଡାଳରେ ବସି

ହୃଦୟର ଅଂଶୁପାରେ ଆବେଗମାନେ
ଯେତେବେଳେ ସଂତରଣ କରଂତି
ଅଭୀପ୍ସିତ ପ୍ରେରଣାର ପକ୍ଷୀ ଉଡ଼ି ଆସିଥାଂତି
ଦୂର ଦୂରାଂତରୁ

ଚହଲି ଯାଇ ଥାଏ ନିଶ୍ୱାସର ତରୁ
ଶିଳ୍ପୀ ଚେତନା ସୁଶୃଂଖଳାରେ ବୁଣିଥାଏ
ରୂପର ଐଶ୍ୱର୍ଯ୍ୟ
ପ୍ରାଣର ପାରିଜାତ ବନରେ ଫିଟି ପଡ଼ିଯାଏ
ଗୋଟିଏ ଝରଣାର ଗାନ !
ସେଇ ଝରଣାଟି କବିର ପ୍ରେମ !

ଅବଶ୍ୟ ଗୋଟିଏ ସମିଶ୍ରଣ
ଅଂତର୍ମନ, ଚୈତନ୍ୟ, କାବ୍ୟିକ ପ୍ରଜ୍ଞା,
ଏକତ୍ରିତ ପ୍ରାଣୀକ, ଆଗକୁ ଉଚ୍ଚତର ମନ ଓ
ଆଲୋକିତ ଅଂତର୍ଦୃଷ୍ଟିର ଗୋଟିଏ ସ୍ତରରେ ପ୍ରବେଶ

କବିତାକୁ କରିଥାଏ ରୂପାୟିତ, ଗୋଟିଏ ଅଭାବିତ ଲକ୍ଷ୍ୟ,
ଅସୀମ ଶକ୍ତିର ସ୍ରୋତ,
ଅତୃପ୍ତି ହୋଇଯାଏ ପ୍ରତିଷ୍ଠିତ !



# ଅଠର

ପକ୍ଷୀକୁ କିଏ ବଳ ଯୋଗାଏ
ଫିଟାଇବାକୁ ତା' କଂଠର ଝରକା
ମନୋସ୍ତାତ୍ତ୍ୱିକ ପରିବେଷ୍ଟନୀଟିଏ ହୁଏ ଶିଳ୍ପ
ପବନରେ ଭାସି ଉଠେ ତା' କଂଠର ସ୍ଥାପତ୍ୟ

ଏହା କ'ଣ ତା' ଆଟମୋସ୍‌ଫିଏର
ନା' ଅଂତର୍ଚେତନାର ଦ୍ୱାର
ଶ୍ୱାସନଳୀପରି କରେ ଧ୍ୱନି ତା' ସମସ୍ୟାର ଲକ୍ଷ୍ୟ
ବସଂତ ଆସିଲେ ଯେମିତି ବୃଂତରେ ଧରି ଥାଏ କଢ !

ଗୋଟିଏ ବ୍ରହ୍ମାଣ୍ଡୀୟ ରହସ୍ୟ
ଚେତନାର ଅଂତରାଳରେ ଲୁକ୍କାୟିତ
ଏକ ମଂଦ୍ର ମାଂତ୍ରିକ ଇଂଗିତ
ଉଷାର ଲାଲିମାରେ ଈଶ୍ୱରଙ୍କ ଦେହକୁ କରୁଛି ସ୍ୱାଗତ !

ଉଲ୍ଲସିତ ଅବତାର ଗୋଟିଏ
ସମସ୍ତ ତର୍କ ଠାରୁ ଦୂରରେ ପକ୍ଷୀକଂଠରୁ
ଆସିଥାଂତି ଓହ୍ଲାଇ, ନ ଥାଏ ସ୍ୱର୍ଗ ଏଠି,
ଚାରିଆଡ଼ ପ୍ରକୃତି; ଅମରାକୁ ନିଂଦା କରୁଛି !



# ଉଣେଇଶ

ମଣିଷର ହୃଦୟରେ ଅପେକ୍ଷା କରିଛି
ଗୋଟିଏ ଉତ୍ତର
ଜୀବନଟା ମନ ରହିତ, ସାମାଜିକ
ଗୋଟିଏ ଭାଗ୍ୟ ତାକୁ ବାଛିଚି କରିବାକୁ ଭୋଗ !

କାହିଁକି ?
ସୁନ୍ଦର ଓ ଚମତ୍କାର ଯଂତ୍ରଣାର ରହସ୍ୟ
ଉଲ୍ଲାସର ଦୌଡ କ'ଣ ଶୁଣି ପାରେ ପ୍ରାଣ
ଗୋଲାପଟିଏ ପରି ପକ୍ଷୀଟିଏ
ଅଚିହ୍ନା ଶକ୍ତି ଗୋଟିଏ ନୀରବତା;

ଭାବନାର ସୁବର୍ଣ୍ଣ ବଖରାକୁ ଆଘାତ ଦେଇ
ଅଂଶୁପାର ପକ୍ଷୀ କହେ କଥା,
ପ୍ରତୀକରେ ଅଭିବ୍ୟକ୍ତ ଧ୍ୱନିର ଚିତ୍ରକଳ୍ପ
କ'ଣ sorrow's songs, ଏହାକୁ ଗାଇଲା
ଈଶ୍ୱରଙ୍କ ବୀଣା !

ନୀରବତା ଆଉ ବସି ପାରିବନି
ମତେ ଏଠୁ ଫେରିବାକୁ ହେବ, ମିନତି
ପରିବ୍ରାଜକର ଶାଶ୍ୱତ ନିଳୟକୁ
ଅଦେଖା ଆଖିର କଳାପାଣିକୁ !

ଉଲ୍ଲାସ ଚିତ୍କାର କଲା,
ତୁମକୁ ମୁଁ ଭଲ ପାଇ ଯେଣୁ ଭୁଲ କରିଛି;
ଆନଂଦକୁ ଅନୁସ୍ୱାହିତ କରିଛି ପୃଥିବୀର ଦୁଃଖ
ଏଣୁ ପକ୍ଷୀ ପରଷୁଛି ତୀବ୍ର କରୁଣ ସଂଗୀତ !



# କୋଡ଼ିଏ

ଚାଚଡେଇ ମତେ ଡାକୁଚି
ଯେମିତି ତମେ ମତେ ଡାକିଥାଅ,
'ଏ, ଆସିବ ! ମୁଁ ତୁମକୁ ଅପେକ୍ଷା କରିଥିବି',
ସେଇ ସହକାର ତଳେ ?

ଅମରତ୍ୱର ଆନଂଦକୁ ଛୁଇଁ ଦିଏ ପୃଥିବୀର ଖୁସି
ପର୍ଦ୍ଦା ଆର ପଟେ ଈଶ୍ୱରଙ୍କ ମୁହଁକୁ କିଏ ଲୁଚାଇଚି
ଗଭୀର ଦୁଃଖ କାଂଦୁଚି ସମୟ ଏ ପଟେ
ଅଂଶୁପାର ପକ୍ଷୀ !

ସନ୍ ଅର୍ ଡଟର୍ ଅଫ୍ ଗଡ଼୍
ସନ୍ ଅର୍ ଡଟର୍ ଅଫ୍ ବାର୍ଡ, ହେଲା କେମିତି ?
ଅଦୃଶ୍ୟ ଶବ୍ଦର ଅର୍ଥ ବାଟ ଭାଂଗୁଚି
ହେଭେନ୍'ସ୍ ଡେଥଲେସ୍ କଲ୍ ମତେ ଡାକୁଚି

ଆସ, ଆସ ମାନସ ଆସ
ମୌଳିକ ଏକ ଅଦେଖା ସୀମା ନିମଂତ୍ରଣ କରୁଛି
ସ୍ୱରରେ ତା' ଉଦ୍‌ଘୋଷଣା, ମୁଁ, ମୁଁ ଈଶ୍ୱର
ହଁ, ଅଲ୍ ଇଜ୍ ଗଡ୍ !

ବୀଜଟି ଦେବତ୍ୱ
ବଢୁଚି ଫଣୀଂଦ୍ର ବାବୁଙ୍କ ଗଛ
ଚାଚଡେଇ ଡାକ ଦେଉଛି, ଆସ
ଆସ ମାନସ ଆସ !

ଫାଇଂଡ୍ ଆଉଟ୍ ଦାଇ ସୋଲ୍
ଇନ୍ ସାଇଲେନ୍ସ ସୀକ୍ ଗଡ୍'ସ୍ ମିନିଂ ଇନ୍ ଦାଇ ଡିପ୍‌ଥସ୍ !



# ଏକୋଇଶି

ହେ, ପ୍ରେମକୁ ସତ୍ୟ ହେବାକୁ ଦିଅ
ଅଂଶୁପା କୂଳରେ ଆଉ ନ ହେଉ ସବୁଜ ଦଳ
ନୈଶ୍ଚିତ୍ୟରେ ନ ଥାଉ ରାତ୍ରୀର ଅଜ୍ଞାନ
ପକ୍ଷୀପରି ଭାବନାର ଡଙ୍ଗା କୂଳ ଚିରୁଥାଉ !

ରାତ୍ରୀରେ ପ୍ରଶାନ୍ତ ଅଂଶୁପା ନ ଶୋଉ
ବୁଢା ଜହ୍ନକୁ ଅନାଇ ଥାଉ ;
ଦିନେ ଏଠି ମିଟିମିଟି ତାରାର ଆଖିମାନଙ୍କୁ ଦେଖି
ରୋଦନ କରିଥିଲେ ରାଧାନାଥ କବି !

ଲ୍ୟାଣ୍ଡ ଅଫ୍ ଡ୍ରିମ୍ସ...., ସୁଧୁମିଛ, ଯଦିଓ ବିବିଧ ;
ଅନେକ ବର୍ଷ ତଳେ ଶୁଣିଥିଲେ କବି ଦାମୋଦର ମିଶ୍ର
ବିଶ୍ୱାସର ଅଂଶୁପା କୂଳ କ'ଣ ଏଡ଼େ ନିର୍ଜନ
ସମୟର ଉପକୂଳରେ ଶୁଣିଥିଲି ରାତିବଗର ବିକଳ !

ହେ ଶୁଣୁଛ,
ମୃତ୍ୟୁର ପକ୍ଷୀ କାହାକୁ ନ କରୁଚି ଶିକାର !
କବିତାର ବଖରା ଭିତରେ ଦୁଇ ବନ୍ଧୁ ଲଢୁଛନ୍ତି
କିଏ ଆଗ, ଯୋଗ ନା' ଜେନ୍, କାହା କାବ୍ୟ
ଅଂଶୁପା ଗୋଟେ ପିଓର୍ ପୋଏଟ୍ରୀ
ଶନିବାର ରାତ୍ରୀ ପ୍ରାର୍ଥନା କରୁଚି, ରବିବାର ଛୁଟି !

ଅଂଶୁପା ଅରାଏ ପ୍ରେମ, ନୁହେଁ ଟିପେ ଫିଲୋସଫୀ ;
କିମ୍ବା ଜଣେ ଅର୍ଜୁନର ଆଖି
ଆରବ ମରୁରେ ଏମିତି ଅନ୍ୟ କେହି ସମୟକୁ କାଟି
ଅଂଶୁପା ପକ୍ଷୀପରି ନିଃସଙ୍ଗ ଗୀତ ଗାଇଛି କି ?



# ବାଇଶି

ରାତ୍ରୀର ସମୁଦ୍ରରେ ଭାସୁଛି ଅଂଶୁପାର ଜାହାଜ
ଯେମିତି ମୃତ୍ୟୁର ସମୁଦ୍ରରେ ଭାସୁଛି
ନିଜ ଭିତରେ ସାଇତା ଅମୃତର ସାମ୍ରାଜ୍ୟ ;
ଜଗତର ନିର୍ମାଣରେ ସମ୍ପୂର୍ଣ୍ଣ ହୋଇଛି ଈଶ୍ୱରଙ୍କ ଆନନ୍ଦ !

ସମୟର ଜାତି ତିନୋଟି
ଅସୀମ ନୀଳିମା ପ୍ରଥମ ବୀଜ
ଅଂଶୁପା ତା' ପକ୍ଷୀମାନଙ୍କ ପାଇଁ ବୁଣିଚି,
ସକାଳ ତ ଦାନ୍ତ ନ ଉଠିଥିବା ଶିଶୁଟିଏ ସ୍ତନ୍ୟ ଖୋଜୁଚି !

ଅସୀମ ଭବିଷ୍ୟତ ଭିତରୁ
ଅସମାପ୍ତ ଅତୀତର ଶିଶୁକୁ ଯିଏ ଉଠାଉଚି
ସିଏ ଅଂଶୁପାର ଦେବରାଜ ରାଉତ
ସ୍ୱର୍ଗ ସହିତ ସମାନ ଖଣ୍ଡେ ଭୂଭାଗକୁ ଉତାରି ଆଣିଛି !

ଅତୀତର ସ୍ପନ୍ଦନ ଆଉ କରୁ ନାଇଁ ଭ୍ରମଣ
ଏବେ ରୂପସୀ ଅଂଶୁପା
ପକ୍ଷୀଙ୍କ ଧଳା ଲଫାପାରେ ଲେଖିଚି ଗୋଲାପୀ ବାର୍ତ୍ତା
କବିବର, ଆପଣ ଆସିବେ, ସାଙ୍ଗରେ ନଗେନ୍ଦ୍ରବାଳାଙ୍କୁ ଆଣିବେ !
ଜନ୍ମର ପକ୍ଷୀଟି ଏବେ ମୃତ୍ୟୁହୀନ ଦେଖିଯିବେ ।



# ତେଇଶି

ତମେ ଏଠି ?
ତମକୁ ଖୋଜିଖୋଜି 'ଆଜି'
ରୂପସୀ ପୋଏଟିଜିମ୍ ଅଂଶୁପାକୁ ଆସିଛି
ଘଟଣା ପରି ବିଞ୍ଚି ହୋଇ ପଡିଚି
ଅଂଶୁପା ସାରା ମୁଭମେଂଟ୍‌ର ପକ୍ଷୀ
ଅଂଶୁପା ତ ଗୋଟିଏ ସ୍ୟାହି ରଙ୍ଗର ପକ୍ଷୀ
ଗୋଟିଏ କୂଳରୁ ଉଡି ଯାଉଛି ଅନ୍ୟ କୂଳକୁ
ଏବଂ ପୁଣି ଲେଉଟି ଆସୁଚି ତା' ନାଭିକୁ
ଅଜ୍ଞାନ ପରି ଜୀବନ ପକ୍ଷୀ ନାଭିରେ ବନ୍ଦୀ
ବ୍ୟାନ ଓ ଅପାନ ସମାନ ହେଉନି
ତଥାପି ପଦ୍ମ ଫୁଟୁଚି
ଫୁଟା ପଦ୍ମର ବାସ୍ନାରେ ଆନନ୍ଦ ଚହଟୁଛି
ଆନନ୍ଦ ତ ତୁମ ବିଶ୍ୱଲୀଳା
ମତେ ଖୋଜି ଖୋଜି ଆସିଚି ?
ତମେ ମତେ ଆଉ ଖୋଜ ନାଇଁ, ସମୟର ପକ୍ଷୀ
'କାଲି' ମତେ ଡାକି ନେଇଚି ଅରୋଭିଲ୍ !



# ଚବିଶି

ହେ ଜୀବନ, ତୁମର ନିଶ୍ୱାସ ପ୍ରଶ୍ୱାସ
ଆଲୋକର ଲୋତକ
ଥପଥପ ନିଗିଡ଼ି ପଡୁଛି ଶାଶ୍ୱତ
ବୃଥାମୟକୁ ତୁମ ମୁଠା କରିଛି ଜବତ ।

ହୃଦୟ କେବେ ଥିଲା ଜୀବନ୍ତ
ମୁହଁର ସୁଷମାଥିଲା ହସନ୍ତ
ପୁର୍ନଜୀବନ ଭିତରେ ଡୁବୁଥିଲା ଶୂନ୍ୟତା
ଚଉଡ଼ା ହେଉଥିଲା ସଂସାରର ଆତ୍ମା ।

ପବନ ହସୁଛି, ମୁଁ କୁଆଡ଼େ ବାହାରିଛି
ଯେମିତି ଆଲୋକର ସଙ୍କେତ
ପୃଥିବୀର ଆକାଶରେ ଅବାସ୍ତବ ସମୃଦ୍ଧ ସୁଖ
ସେହି ଅଦେଖା ଦୃଶ୍ୟ ।

ଗୋଟିଏ ସ୍ଥାୟୀ ସ୍ଥିରତା
ହୋଇପାରେ ଏକ ଶକ୍ତ ନୀରବତା
ମାତ୍ର ମୁଁ ତ ଈଶ୍ୱରଙ୍କ ପକ୍ଷୀ
ତାଙ୍କ ନୀଳ ଅଂଶୁପାକୁ ଛାଡ଼ି ଯିବି କୁଆଡ଼େ ?



## ନକୁଳ ଚନ୍ଦ୍ର ସାହୁଙ୍କ ପ୍ରକାଶିତ
## ତିନୋଟି ଅମୃତ ଆକାଂକ୍ଷା




(୧୯୮୦)



(୧୯୮୧)




(୨୦୧୭)



ନକୁଳ ଚନ୍ଦ୍ର ସାହୁ(୧୯୫୧)



କୃଷ୍ଣ ବି ତ କମ୍ର କାଣ୍ଟୁଆଟିଏ
ଭଲ ବଜାଇ ଜାଣେ ବଂଶୀ, ଠିକ୍ ଏମିତି
ଏଇ ଅଂଶୁପାର ପକ୍ଷୀ କଳ୍ପନାର ଉଙ୍ଗାଉଙ୍ଗା ସ୍ୱର୍ଗକୁ ଡ଼ାକୁଚି
ମହାମୁହୂର୍ତ୍ତର ଖଞ୍ଜଣି ଆନନ୍ଦକୁ ଡ଼ାକୁଚି
ସୁସ୍ୱରା ପକ୍ଷୀ ସ୍ଥାନିତ ଚେତନାରେ ପିଣ୍ଡକୁ ବ୍ରହ୍ମାଣ୍ଡ ଯାଚୁଚି